

''ଭୟେ ଚକିତା ଭୀରୁ ପ୍ରିୟାକୁ ବଳେ,
ଘେନି ଯିବାକୁ ପ୍ରିୟ ନିବାସ ସ୍ଥଳେ''



''ଆଉ କେସନେ ଏହି ରତି ରହିଲା,
ଟିକେ ତ ହେଲେ ତାର କ୍ଷତି ନୋହିଲା !''

Digitized by srujanika@gmail.com

# ରତିବିଳାପ

कुमार संभवम्
महाकवि कालिदास

ଏକୋ ରସଃ କରୁଣ ଏବ
ନିମିରଭେ
ଭିନ୍ନଃ ପୃଥକ୍ ପୃଥଗିବା
ଶ୍ରୟେତ ବିବର୍ତ୍ତାନ୍।
ଉତ୍ତର ରାମ ଚରିତମ
ଭବଭୂତି

Digitized by srujanika@gmail.com

# ରତି ବିଳାପ

ସତ୍ୟାନନ୍ଦ ଚମ୍ପତିରାୟ




Digitized by srujanika@gmail.com

ରତି ବିଳାପ-ଲେଖକ : ସତ୍ୟାନନ୍ଦ ଚମ୍ପତିରାୟ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଚ୍ଛଦ ଓ ଅଳଙ୍କରଣ : ଗୋପାଳ କାନୁନ୍‌ଗୋ, ନିତ୍ୟାନନ୍ଦ ମହାପାତ୍ର, ବିଜୟ ପ୍ରଧାନ, ଡି.ଟି.ପି. : ଟେକ୍ନୋପ୍ରିଣ୍ଟ, କଟକ, ମୁଦ୍ରଣ : ଗ୍ରାଫିକ୍ ଆର୍ଟ ଅଫସେଟ୍, କଟକ ।



RATI BILAPA-Author : Satyananda Champatiray, Publisher : Sahadev Pradhan, *Friends' Publishers*, Binodbehari, Cuttack-2, Orissa (India), Cover & Illustration : Goapl Kanungo, Nityananda Mahapatra, Bijoy Pradhan, D.T.P. : Technoprint, Cuttack, Printer : Graphic Art Offset, Cuttack.

First Edition : 2001 (F.P.)

Price : **Rs. 45**

ISBN 81-7401-375-X

*Digitized by srujanika@gmail.com*

'ରତି ବିଳାପ'ର ପରିକଳ୍ପନା ଦିନଅଧକର ନୁହେଁ—ଦୀର୍ଘ ଅଢ଼େଇ ବର୍ଷର । ଏହି ସ୍ୱପ୍ନକୁ ସାର୍ଥକ କରିବାରେ ବହୁ ଆୟାସ ସ୍ୱୀକାର କରିବାକୁ ପଡ଼ିଛି ଏବଂ ସେଥିପାଇଁ ବହୁ ସହୃଦୟ ବନ୍ଧୁ ସାହାଯ୍ୟ ସହଯୋଗ କରି କୃତଜ୍ଞତାର ପାତ୍ର ହୋଇଛନ୍ତି ।

ପୁସ୍ତକଟିକୁ ସଚିତ୍ର ଓ ସରସ କରିବାରେ ଶିଳ୍ପୀ ଶ୍ରୀ ଗୋପାଳ କାନୁନଗୋ ଓ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କର ସଦୟ ସହଯୋଗ ସ୍ମରଣୀୟ ।

କର୍ମବହୁଳ ଜୀବନ ଭିତରେ ଡକ୍ଟର ହରେକୃଷ୍ଣ ମହତାବ ଓ ଡକ୍ଟର ପ୍ରାଣକୃଷ୍ଣ ପରିଜା ପାଣ୍ଡୁଲିପିଟିକୁ ପାଠକରି ସେମାନଙ୍କର ସୁଚିନ୍ତିତ ଅଭିମତ ଦେଇଥିବାରୁ ସେମାନଙ୍କ ନିକଟରେ ମୁଁ ଋଣୀ । ବାଲେଶ୍ୱର କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ପ୍ରହ୍ଲାଦ ପ୍ରଧାନ ମୁଖବନ୍ଧ ରଚନା କରି କେବଳ ମୋର ନୁହେଁ, ପାଠକପାଠିକାମାନଙ୍କର ମଧ୍ୟ କୃତଜ୍ଞତାର ପାତ୍ର ହୋଇଛନ୍ତି ।

ଶେଷରେ ଫ୍ରେଣ୍ଡସ୍ ପବ୍ଲିଶର୍ସର କର୍ମକର୍ତ୍ତାଗଣ ପୁସ୍ତକଟିର ମୁଦ୍ରଣରେ ବିଶେଷ ଯତ୍ନ ନେଇଥିବାରୁ ସେମାନଙ୍କୁ ମୋର ହାର୍ଦ୍ଦିକ ଧନ୍ୟବାଦ ଜଣାଉଛି ।

'ରତି-ବିଳାପ' ପାଠକପାଠିକାଙ୍କ ନିକଟରେ ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

—ଲେଖକ



Digitized by srujanika@gmail.com

# ଉପହାର

ଶିଳ୍ପୀ ବନ୍ଧୁ ଶ୍ରୀଯୁକ୍ତ ଗୋପାଳ କାନୁନଗୋ
ସାଦର ନିବେଦନ

୨୨|୧୧|୫୭



Digitized by srujanika@gmail.com



ଶ୍ରୀମାନ୍ ସତ୍ୟାନନ୍ଦ ଚମ୍ପତିରାୟଙ୍କ 'ରତି ବିଳାପ' କାବ୍ୟ ପାଠ କରି ସନ୍ତୋଷ ଲାଭ କରିଛି । କାବ୍ୟଟି କାଳିଦାସଙ୍କ 'କୁମାର ସମ୍ଭବ'ର ଏକ ସର୍ଗର ଅନୁବାଦ । ଶ୍ରୀମାନ୍ ସତ୍ୟାନନ୍ଦଙ୍କ ଓଡ଼ିଆ ସାହିତ୍ୟରେ ଅଧିକାର ଅଛି ଓ ସାହିତ୍ୟ କ୍ଷେତ୍ରରେ ସାଧନା ମଧ ଅଛି । ସେ 'ଝଙ୍କାର' ମାସିକ ପତ୍ରିକାର ପରିଚାଳନା ସମ୍ପାଦକ । କାବ୍ୟ ନିହିତ ଭାବ କାଳିଦାସଙ୍କର । ସେ ସମ୍ବନ୍ଧରେ କିଛି କହିବା ଧୃଷ୍ଟତା ମାତ୍ର । କିନ୍ତୁ ସେ ଭାବକୁ ଯେପରି ଭାବରେ ଶ୍ରୀମାନ୍ ସତ୍ୟାନନ୍ଦ ଭାଷା ଓ ଛନ୍ଦର ଆବରଣ ଦେଇଛନ୍ତି, ତାହା ପ୍ରଶଂସାର ବିଷୟ । 'ରତି ବିଳାପ' ଅଧୁନାତନ ଓଡ଼ିଆ ସାହିତ୍ୟ ମଧ୍ୟରେ ବିଶିଷ୍ଟ ସ୍ଥାନ ପାଇବ ବୋଲି ମୁଁ ଆଶା କରୁଛି ।

ରାଜଭବନ
୧୯.୫.୫୬

**ଶ୍ରୀ ହରେକୃଷ୍ଣ ମହତାବ**
ରାଜ୍ୟପାଳ, ବମ୍ବେ



Digitized by srujanika@gmail.com

ଶ୍ରୀ ଚମ୍ପତିରାୟ କାଳିଦାସଙ୍କ ରତିବିଳାପର ଯେଉଁ ଅନୁବାଦ କରିଛନ୍ତି, ତାହା ମୁଁ ଉପଭୋଗ କରିଛି । ଭାଷା ସରଳ—ତେଣୁ ସୁଖପାଠ୍ୟ ହୋଇଛି । ସଂସ୍କୃତ ଓ ଅନ୍ୟାନ୍ୟ ଭାଷାର ବିଶିଷ୍ଟ ପୁସ୍ତକମାନ ଓଡ଼ିଆରେ ଅନୁବାଦ କରି ତରୁଣ ଲେଖକ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବେ ବୋଲି ମୋର ଆଶା ।

ପାରିଜାତକ
୨୧.୨.୫୬

**ଶ୍ରୀ ପ୍ରାଣକୃଷ୍ଣ ପରିଜା**
କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ



Digitized by srujanika@gmail.com

# ରତି ବିଳାପ

'ରତି ବିଳାପ' ଗୋଟିଏ ମୂଳଗ୍ରନ୍ଥ ବା ଗୋଟିଏ ଗ୍ରନ୍ଥ ନୁହେଁ । କାଳିଦାସଙ୍କ କାବ୍ୟର ପ୍ରତ୍ୟେକ ସର୍ଗର ଗୋଟିଏ ଗୋଟିଏ ନାମକରଣ ହୋଇଅଛି । ସେଥିରୁ 'କୁମାର ସମ୍ଭବ'ର ଚତୁର୍ଥ ସର୍ଗର ନାମ ହେଉଛି 'ରତି ବିଳାପ'; ଯେପରି 'ରଘୁବଂଶ'ର ଅଷ୍ଟମ ସର୍ଗର ନାମ ହେଉଛି 'ଅଜ ବିଳାପ' । କେବଳ କାଳିଦାସଙ୍କ କାବ୍ୟରେ ନୁହେ, ସଂସ୍କୃତ ସାହିତ୍ୟରେ ଅନ୍ୟତ୍ର ମଧ 'ବିଳାପ' ଦେଖିବାକୁ ମିଳୁଛି । ଆର୍ଯ୍ୟଭଦନ୍ତ ଅଶ୍ୱଘୋଷଙ୍କ 'ବୁଦ୍ଧ ଚରିତ'ର ଅଷ୍ଟମ ସର୍ଗର ନାମ 'ଅନ୍ତଃପୁର ବିଳାପ' ଓ 'ସୌନ୍ଦରାନନ୍ଦ'ର ଷଷ୍ଠ ସର୍ଗର ନାମ 'ଭାର୍ଯ୍ୟା ବିଳାପ' ଓ ସପ୍ତମ ସର୍ଗର ନାମ 'ନନ୍ଦ ବିଳାପ' । ଏସବୁ ଦେଖିଲେ ଜଣାପଡୁଛି ଯେ–ସଂସ୍କୃତ ସାହିତ୍ୟରେ ଗୋଟିଏ 'ବିଳାପ ସାହିତ୍ୟ' ଥିଲା । ଅନେକ ଜାଗାରେ 'ବିଳାପ' ନାମ ନ ଥାଇ ମଧ ବିଳାପ ସାହିତ୍ୟ ଦେଖିବାକୁ ମିଳୁଛି । ଆଦିକବି ବାଲ୍ମୀକିଙ୍କ ରାମାୟଣରେ ଏହାର ଉଦାହରଣ ବିରଳ ନୁହେଁ । ବିଳାପର ପ୍ରସଙ୍ଗ ଆସିଲା ମାତ୍ରେ ବାଲ୍ମୀକି କିଛି ନା କିଛି ଲେଖି ଦେଇଛନ୍ତି, ଅବସର ଛାଡ଼ି ନାହାନ୍ତି । ରାମଚନ୍ଦ୍ରଙ୍କ ବନ ଗମନ ପରେ 'ଦଶରଥ ବିଳାପ', 'କୌଶଲ୍ୟା ବିଳାପ' 'ପୌରଜନ ବିଳାପ', ଦଶରଥଙ୍କ ମୃତ୍ୟୁପରେ 'ଅନ୍ତଃପୁର ବିଳାପ', 'ପୌରଜନ ବିଳାପ', ସମ୍ବାଦ ପାଇ 'ରାମ ବିଳାପ', ସୀତା ହରଣ ପରେ 'ରାମ ବିଳାପ, 'ସୀତା ବିଳାପ' ଆଦି ପ୍ରଚୁରମାତ୍ରାରେ ରାମାୟଣରେ 'ବିଳାପ' ଦେଖିବାକୁ ମିଳେ । ନୈଷଧରେ 'ହଂସ ବିଳାପ' ମଧ ପ୍ରସିଦ୍ଧ ।

କେବଳ ସଂସ୍କୃତ ସାହିତ୍ୟରେ ନୁହେଁ, ଓଡ଼ିଆ ସାହିତ୍ୟରେ ମଧ ଏହିପରି ବିଳାପ ଦେଖିବାକୁ ମିଳେ । ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀର ଦ୍ୱାଦଶ ଛାନ୍ଦର ଶୀର୍ଷକ ହେଉଛି– 'ଲାବଣ୍ୟବତୀର ବିଳାପ', ବିଦଗ୍ଧ ଚିନ୍ତାମଣିର ୩୧ଶ ଛାନ୍ଦର ଶୀର୍ଷକ ହେଉଛି–''ସ୍ୱପ୍ନାନ୍ତରେ କିଶୋରୀଙ୍କ ବିଳାପ', ୩୩ଶ ଓ ୩୪ଶ ଛାନ୍ଦର 'କୃଷ୍ଣଙ୍କର ସ୍ୱପ୍ନାନ୍ତର ବିଳାପ', ୩୬ଶ ଛାନ୍ଦର 'ଶ୍ରୀକୃଷ୍ଣଙ୍କର ବିଭ୍ରମ ବିଳାପ', ୩୮ଶ ଛାନ୍ଦର 'କିଶୋରୀଙ୍କ ଉତ୍‌କଣ୍ଠା ବିଳାପ' ଓ ୭୧ଶ ଛାନ୍ଦର 'ବଂଶୀ ବିଳାପ' ।

ଓଡ଼ିଆ ସାହିତ୍ୟରେ ଏହିପରି ଆହୁରି ଅନେକ ବିଳାପ ସାହିତ୍ୟର ଉଦାହରଣ ଦେଖିବାକୁ ମିଳେ । ଏହିସବୁ ବିଳାପ ସାହିତ୍ୟ କୌଣସି ମହାକାବ୍ୟର ଅଙ୍ଗୀଭୂତ । ମନେହୁଏ–ଏହି ବିଳାପ

Digitized by srujanika@gmail.com

ସାହିତ୍ୟରୁ ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର କାନ୍ଦଣା ସାହିତ୍ୟର ଉତ୍ପତ୍ତି ହେଲା । ଓଡ଼ିଆ ସାହିତ୍ୟରେ କାନ୍ଦଣା ସାହିତ୍ୟ ପ୍ରସିଦ୍ଧ ଓ କେବଳ ସାହିତ୍ୟରେ ନୁହେଁ, ଓଡ଼ିଆ ଜୀବନରେ ମଧ୍ୟ କାନ୍ଦଣା ସାହିତ୍ୟର ଗୋଟିଏ ବିଶିଷ୍ଟ ସ୍ଥାନ ଅଛି ।

ଏହି ବିଳାପ ସାହିତ୍ୟର ଗୋଟିଏ ପ୍ରଧାନ ଉଦାହରଣ ହେଉଛି 'ରତି ବିଳାପ' । ଏହି ବିଳାପର ବିପ୍ରଳମ୍ଭ ସହିତ ମଧ୍ୟ ସମ୍ବନ୍ଧ ଅଛି । ସଂସ୍କୃତ ଶବ୍ଦରେ 'ପ' ଏବଂ 'ଭ' ଅନେକ ଗୋଳମାଳ କରନ୍ତି । ବିପ୍ରଳମ୍ଭ ଆସିଛି ଲଭ୍ ଧାତୁରୁ, କିନ୍ତୁ ଏହାର ଅର୍ଥ ହୁଏ ବିପ୍ରଳାପ ବା ବିଳାପ—ଲପ୍ ଧାତୁ, ଯେପରି ଲୋଲୁପ ଆସିଛି ଲୁପ୍ ଧାତୁରୁ, ଅର୍ଥ ହୁଏ ଲୋଲୁଭ (ଲୁଭ୍ ଧାତୁ) । ଏଣୁ ବିଳାପର ଯଦି ଶୋକ ଅର୍ଥ ନିଆହୁଏ, ତେବେ ବିଳାପ ସାହିତ୍ୟ କରୁଣ ରସରେ ଅନ୍ତର୍ଭୁକ୍ତ ହେବ । କାରଣ, କରୁଣ ରସର ସ୍ଥାୟୀ ଭାବ ହେଉଛି ଶୋକ । ସାହିତ୍ୟ ଦର୍ପଣକାର କହିଛନ୍ତି ମଧ୍ୟ—

ଇଷ୍ଟ ନାଶ, ଦନିଷ୍ଟାତପ୍ତଃ କରୁଣାଖ୍ୟୋ ରସୋ ଭବେତ୍
ଧୀରୈଃ କପୋତବର୍ଣ୍ଣୋଽୟଂ କଥିତୋ ଯମଦୈବତଃ ।
ଶୋକୋଽତ୍ର ସ୍ଥାୟି ଭାବଃ ସ୍ୟାଚ୍ଛୋଚ୍ୟମାଲମ୍ବନଂ ମତମ୍ ।।

ଇଷ୍ଟନାଶ ବା ଅନିଷ୍ଟ ପ୍ରାପ୍ତି ହେତୁରୁ କରୁଣ ନାମକ ରସ ହୁଏ । ପଣ୍ଡିତମାନେ ଏହାର ବର୍ଣ୍ଣ କପୋତ ବର୍ଣ୍ଣ ଏବଂ ଦେବତା ଯମ ବୋଲି କହନ୍ତି । ଏହାର ଶୋକ ହେଉଛି ସ୍ଥାୟୀଭାବ ଓ ଶୋଚ୍ୟ ହେଉଛି ଆଲମ୍ବନ । ଏହି ଇଷ୍ଟ ନାଶର ଅର୍ଥ କରା ହୋଇଛି—ପୁତ୍ରାଦିର ବିଚ୍ଛେଦ ବା ଆତ୍ମୀୟସ୍ୱଜନଙ୍କ ନାଶ । ଏଣୁ ରସଗଙ୍ଗାଧରକାର ଶୋକର ଅର୍ଥ କରିଛନ୍ତି—'ପୁତ୍ରାଦି ବିଯୋଗ ମରଣାଦିଜନ୍ମା ବୈକ୍ଳବ୍ୟାଖ୍ୟଶ୍ଚିତ୍ତବୃତ୍ତି ବିଶେଷଃ ଶୋକଃ ।' ପୁତ୍ରାଦିର ବିଯୋଗ ଓ ମରଣ ଆଦିରୁ ଜାତ 'ବୈକ୍ଳବ୍ୟ' ନାମକ ଚିତ୍ତବୃତ୍ତି ବିଶେଷ ହେଉଛି ଶୋକ । 'ପୁତ୍ରାଦି' ଶବ୍ଦରେ କନ୍ୟା, ଭ୍ରାତା, ଭଗିନୀ, ବନ୍ଧୁ ଆଦି ମଧ୍ୟ ଅନ୍ତର୍ଭୁକ୍ତ । 'ବତ୍ସଳ' ରସରେ 'ପୁତ୍ରାଦି'ରେ ସହୋଦର ଅନ୍ତର୍ଭୁକ୍ତ କରାହୋଇଛି ।

ବର୍ତ୍ତମାନ ଏଠାରେ ପ୍ରଶ୍ନ ଉଠୁଛି—ପ୍ରିୟା ବା ନାୟିକା ବିଯୋଗ ମରଣାଦିଜନିତ ଶୋକ ହେଲେ କେଉଁ ରସରେ ଯିବ ? ଏପରି ସ୍ଥଳେ ପ୍ରିୟା ବା ନାୟିକାଶ୍ରିତ ହୋଇଥିବାରୁ ଶୃଙ୍ଗାର ରସ ହେବ ଏବଂ ବିଯୋଗ ମରଣାଦି ଥିବାରୁ ବିପ୍ରଳମ୍ଭ ଶୃଙ୍ଗାର ହେବ । ଏହା ସଙ୍ଗେ ପୁଣି ଶୋକ ଥିବାରୁ କରୁଣ ବିପ୍ରଳମ୍ଭ ହେବ । ବିଶ୍ୱନାଥ କବିରାଜ କହିଛନ୍ତି ମଧ୍ୟ—

ଯତ୍ର ତୁ ରତିଃ ପ୍ରକୃଷ୍ଟା ନାଭିଷ୍ଟ ମୁପୈତି ବିପ୍ରଲମ୍ଭୋଽସୌ
ସ ଚ ପୂର୍ବରାଗମାନ ପ୍ରବାସ କରୁଣାତ୍ମକଶ୍ଚତୁର୍ଧା ସ୍ୟାତ୍ ।



Digitized by srujanika@gmail.com

ଯେଉଁଠାରେ 'ରତି' ପ୍ରକୃତ ହୋଇଥାଏ ଓ ଅଭୀଷ୍ଟ (ନାୟକ ବା ନାୟିକା) ଅଭୀଷ୍ଟକୁ ପ୍ରାପ୍ତ ହୁଅନ୍ତି ନାହିଁ, ସେଠାରେ ବିପ୍ରଲମ୍ଭ ଶୃଙ୍ଗାର ହୁଏ ଏବଂ ତାହା ପୁଣି ପୂର୍ବରାଗ, ମାନ, ପ୍ରବାସ ଓ କରୁଣକୁ ନେଇ ଚାରି ପ୍ରକାର ହୁଏ । କେବଳ ଚାରିପ୍ରକାର ନୁହେଁ, ବିରହକୁ ନେଇ ବିପ୍ରଲମ୍ଭ ଆଉ ଏକ ପ୍ରକାର ମଧ୍ୟ ହୋଇପାରେ । ଏହି ଦୃଷ୍ଟିରୁ ବିଚାର କଲେ 'ରତି ବିଳାପ' ଶୃଙ୍ଗାର ରସର ଅନ୍ତର୍ଭୁକ୍ତ ଓ ଶୃଙ୍ଗାର ରସରେ ପୁଣି ବିପ୍ରଲମ୍ଭ ଶୃଙ୍ଗାର ବା କରୁଣ ବିପ୍ରଲମ୍ଭରେ ଯିବ । ସାହିତ୍ୟ ଦର୍ପଣକାର କରୁଣ ବିପ୍ରଲମ୍ଭର ଲକ୍ଷଣ ନିର୍ଦ୍ଦେଶ କରି କହିଛନ୍ତି ମଧ୍ୟ–

ଯୂନୋରେକତରସିନ୍ ଗତବତି ଲୋକାନ୍ତରଂ ପୁନ ରଲଭ୍ୟେ
ବିମନାୟେତେ ଯଦୈକସ୍ତଦା ଭବେତ୍ କରୁଣ ବିପ୍ରଲମ୍ଭାଖ୍ୟଃ ।

ଯୁବକ ଯୁବତୀ ଭିତରୁ ଜଣେ ଯଦି ଲୋକାନ୍ତର ପ୍ରାପ୍ତ ହୁଅନ୍ତି ଏବଂ ପୁଣି ଦର୍ଶନ ମିଳିବାର ସମ୍ଭାବନା ନ ଥାଏ ଏବଂ ସେହି ହେତୁରୁ ଯେତେବେଳେ ଜଣେ ବିମନା ହୁଅନ୍ତି, ତେବେ ସେହି ରସକୁ କରୁଣ ବିପ୍ରଲମ୍ଭ କହନ୍ତି ।

କିନ୍ତୁ ମନେ ରଖିବାକୁ ହେବ ଯେ ସାହିତ୍ୟ ଦର୍ପଣକାରଙ୍କ ମତ ଅନୁସାରେ କରୁଣ ବିପ୍ରଲମ୍ଭ ଶୃଙ୍ଗାର ରସର ଏକ ପ୍ରଭେଦ ମାତ୍ର । ତେବେ କରୁଣ ରସ ଓ କରୁଣ ବିପ୍ରଲମ୍ଭର ପ୍ରଭେଦ କଣ ? ଏମାନଙ୍କର ପ୍ରଭେଦ ସ୍ଥାୟୀ ଭାବକୁ ନେଇ; ଶୋକ ସ୍ଥାୟୀଭାବ ହେଲେ କରୁଣ ରସ ହୁଏ । ଆହୁରି ମଧ୍ୟ ବିପ୍ରଲମ୍ଭ ପରେ ସମ୍ଭୋଗର ସମ୍ଭାବନା ଅଛି ।

ଶୋକ ସ୍ଥାୟିତୟାଭିନ୍ନୋ ବିପ୍ରଲମ୍ଭାଦୟଂ ରସଃ
ବିପ୍ରଲମ୍ଭେ ରତିଃ ସ୍ଥାୟୀ ପୁନଃ ସଂଭୋଗ ହେତୁକଃ ।

ଆହୁରି ମଧ୍ୟ କରୁଣ ବିପ୍ରଲମ୍ଭରେ ନାୟକ ନାୟିକା ଭିତରୁ ଜଣେ ଅଲଭ୍ୟ ହେଲେ ବା ଶରୀରାନ୍ତରରେ ଲଭ୍ୟ ହେଲେ ରତିର ନାଶ ବା ଉତ୍କଟ 'ଶୋକ' ସମ୍ଭବ ହେତୁରୁ କରୁଣ ରସ ହିଁ ହେବ । ଶୃଙ୍ଗାର ରସରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିବା ବିପ୍ରଲମ୍ଭର ମଧ୍ୟ ଚରମ ପରିଣତି ହେଉଛି କରୁଣ ରସରେ । କେବଳ ଶୃଙ୍ଗାର କାହିଁକି, ସବୁରସ ଏକମାତ୍ର କରୁଣ ରସର ବିଭିନ୍ନ ବିକାଶ ବା ବିକାର ବୋଲି ଭବଭୂତି କହିଛନ୍ତି । ସେ କହିଛନ୍ତି–

ଏକୋ ରସଃ କରୁଣ ଏବ ନିମିତ୍ତଭେଦାଦ୍
ଭିନ୍ନଃ ପୃଥକ୍ ପୃଥଗିବାଶ୍ରୟତେ ବିବର୍ତ୍ତାନ୍ ।

ଆବର୍ତ୍ତ ବୁଦ୍‌ବୁଦ ତରଙ୍ଗମୟାନ ବିକାରାନ୍
ଅମ୍ଭୋ ଯଥା ସଳିଳମେବତୁ ତତ୍ ସମଗ୍ରମ୍ ।

Digitized by srujanika@gmail.com

କେବଳ ମାତ୍ର ଗୋଟିଏ ରସ ଅଛି, ତାହା ହେଉଛି କରୁଣ । ସେହି କରୁଣ ରସ ନାନା ନିମିତ୍ତ ଭେଦରୁ ଭିନ୍ନ ହୋଇ ପୃଥକ୍ ପୃଥକ୍ ବିବର୍ତ୍ତ ଲାଭ କରେ (ଅର୍ଥାତ୍ ବିଭିନ୍ନ ରସରେ ପରିଣତ ହୁଏ); କିନ୍ତୁ ବସ୍ତୁତଃ ସବୁଯାକ ହେଉଛି ପାଣି । ଏଣୁ ରାମଙ୍କର ସୀତାବିୟୋଗଜନିତ ରସକୁ ମଧ୍ୟ କରୁଣ ବୋଲି କହିଛନ୍ତି ।

ଅନିର୍ଭିନ୍ନୋ ଗଭୀରତ୍ୱା ଦନ୍ତର୍ଗୂଢ଼ ଘନବ୍ୟଥଃ
ପୁଟପାକ ପ୍ରତୀକାଶୋ ରାମସ୍ୟ କରୁଣରସଃ ।।

ଗଭୀର ହୋଇଥିବାରୁ ଅନିର୍ଭିନ୍ନ–ଅପ୍ରକାଶିତ ଓ ଭିତରେ କଠିନ ବ୍ୟଥା ଗୂଢ଼ ହୋଇ ରହିଥିବାରୁ ରାମଙ୍କର କରୁଣରସ ପୁଟପାକ ପରି । ଏହି ଦୃଷ୍ଟିରୁ ବିଚାର କଲେ 'ରତି ବିଳାପ' କରୁଣ ରସରେ ଯିବ ।

ପୂର୍ବୋକ୍ତ ଆଲୋଚନାରୁ ସ୍ପଷ୍ଟ ଜଣାପଡୁଛି ଯେ–ସମସ୍ୟା ବଡ଼ ଜଟିଳ, କରୁଣ ବିପ୍ରଲମ୍ଭ ଓ କରୁଣ ଏକ କି ଦୁଇ ? ରସଗଙ୍ଗାଧରକାର ମଧ୍ୟ ଏହି ଅଡୁଆରେ ପଡ଼ିଛନ୍ତି ଓ କହିଛନ୍ତି ଯେ–'କେଚିତ୍ତୁ ରସାନ୍ତର ମେବ କରୁଣ ବିପ୍ରଲମ୍ଭାଖ୍ୟମିଚ୍ଛନ୍ତି ।' କେହି କେହି କରୁଣ ବିପ୍ରଲମ୍ଭକୁ ଅନ୍ୟ ଏକରସ–ସ୍ୱତନ୍ତ୍ର ରସ–ବୋଲି ମାନିବାକୁ ଇଚ୍ଛା କରନ୍ତି, ତାହା କରୁଣ ରସରେ ଯିବ ନାହିଁ କି କରୁଣ ବିପ୍ରଲମ୍ଭ ଶୃଙ୍ଗାର ରସରେ ଯିବ ନାହିଁ ।

ରସ ବିବାଦ ଯାହାହେଉ କରୁଣ ସମସ୍ତଙ୍କର ଉପଭୋଗ୍ୟ ବା ଆସ୍ୱାଦ୍ୟ, ତାହା ପୁଣି ସିଦ୍ଧ-କବି କାଳିଦାସଙ୍କ ହାତ ପଡ଼ିଥିବାରୁ ଆହୁରି ଆସ୍ୱାଦ୍ୟ ହୋଇଅଛି । ଏଣୁ ରତି ବିଳାପର ସାହିତ୍ୟିକ ମହତ୍ତ୍ୱ କେତେ, ସମସ୍ତେ ଉପଲବ୍ଧି କରି ପାରୁଥିବେ । ଏପରି ସ୍ଥଳେ ଯେ କୌଣସି କବିପ୍ରାଣବ୍ୟକ୍ତି ରତି ବିଳାପର ରସ ଆସ୍ୱାଦନ ଅନ୍ୟମାନଙ୍କ ପାଖରେ ମଧ୍ୟ ପରିବେଷଣ କରିବାକୁ ଲାଳାୟିତ ହେବ, ହେବା ସ୍ୱାଭାବିକ ଓ ଉଚିତ ମଧ୍ୟ ।

କିନ୍ତୁ କାଳିଦାସଙ୍କ ରୀତି ବା ଶବ୍ଦ ବନ୍ଧକୁ ଶବ୍ଦେତରାସହ ବା ଶବ୍ଦେତର ପରିବୃତ୍ତ୍ୟ ସହ ବୋଲି କହନ୍ତି, ଅର୍ଥାତ୍ କାଳିଦାସ ଯେଉଁ ଜାଗାରେ ଯେଉଁ ଶବ୍ଦ ବ୍ୟବହାର କରିଛନ୍ତି, ସେହି ଜାଗାରେ ସେତିକି ମାତ୍ରାରେ ଶବ୍ଦାନ୍ତର ବ୍ୟବହାର କରିହେବ ନାହିଁ ଏବଂ କଲେ ସେହି ଚମତ୍କାରିତାରେ ବାଧା ପଡ଼ିବ । ଏପରି ସ୍ଥଳେ ତାଙ୍କର ରଚନାକୁ ଭାଷାନ୍ତର କରିବା କେତେଦୂର ସମ୍ଭବ ଓ ଯୁକ୍ତିସଙ୍ଗତ, ଏହା ବିଚାର୍ଯ୍ୟ । ସମ୍ଭବତଃ ଏହି କାରଣରୁ କବି ଗଙ୍ଗାଧର ମେହେର କାଳିଦାସଙ୍କର ଅନବଦ୍ୟ କୃତି ଶକୁନ୍ତଳା ନାଟକର ଅନୁବାଦ ନ କରି ତାଙ୍କର ପଦାଙ୍କ ଅନୁସରଣ କରି 'ପ୍ରଣୟ ବଲ୍ଲରୀ' ନାମରେ ଏକ ନୂଆ ସୃଷ୍ଟି କରିଛନ୍ତି ଏବଂ ତାର ଭୂମିକାରେ କହିଛନ୍ତି– 'ଭିନ୍ନ ଭାଷାରେ ମୂଳ କବିତାର ଭାବ ପୂର୍ଣ୍ଣ ରୂପେ ପ୍ରକାଶ କରିବା ସୁକଠିନ କାର୍ଯ୍ୟ । ଗୋଟିଏ ହସ୍ତୀ ସ୍ୱାଧୀନ ଭାବରେ ଚାଲିଗଲେ ତାହାର ଗତିରେ ଯେଉଁ ଶୋଭା ଥାଏ, ଅନ୍ୟ ଗୋଟିଏ



Digitized by srujanika@gmail.com

ହସ୍ତୀ ପୂର୍ବଗାମୀ ହସ୍ତୀର ଠିକ୍ ପଦ ଚିହ୍ନ ଉପରେ ପଦକ୍ଷେପ କରି କରି ଚାଲିଗଲେ ସେ ଶୋଭା ରହି ପାରେ ନାହିଁ । କିନ୍ତୁ ସେହି ମାର୍ଗରେ ହଂସର ନୈସର୍ଗିକ ଗତି ଦର୍ଶନୀୟ ହୋଇଥାଏ ।' କଥାଟି ସତ, କଥାଟି ଆହୁରି ସତ କାଳିଦାସଙ୍କ ପଦ୍ୟକୁ ପଦ୍ୟରେ ଅନୁବାଦ କରିବା । କିନ୍ତୁ ନୈସର୍ଗିକ ପଦର ଶୋଭା ଦେଖି କଳାକାର ତାର ଅନୁକରଣ ବା ଚିତ୍ର ପଦ୍ମର ଅଙ୍କନରୁ ବିରତ ହୁଏ କି ? ଚିତ୍ର ପଦ୍ମ ମଧ୍ୟ ଆନନ୍ଦ ଦେଇଥାଏ । ଆହୁରି ମଧ୍ୟ—କବି ସ୍ୱାର୍ଥପର ବା ଆତ୍ମସଂକୁଚିତ ନୁହେଁ, ସେ ତାର ଆନନ୍ଦର ସାଧାରଣୀ କରଣ ଚାହେଁ । ବିଶାଳ ହିମାଳୟର ତୁଙ୍ଗ ଶିଖରରେ ଆରୋହଣ କରିବାକୁ ଅସମର୍ଥ ଲୋକ ଚିତ୍ର ଦେଖି ଆତ୍ମସନ୍ତୋଷ ଲାଭ କଲା ପରି କାଳିଦାସଙ୍କ ସାହିତ୍ୟରେ ପ୍ରବେଶ କରିପାରୁ ନଥିବା ଲୋକଙ୍କ ପକ୍ଷରେ ଅନୁବାଦର ଯଥେଷ୍ଟ ମୂଲ୍ୟ ଅଛି ।

କିନ୍ତୁ 'ରତି ବିଳାପ'ର ତ ଥରେ ଅନୁବାଦ ହୋଇଯାଇଛି । ୰ ମୃତ୍ୟୁଞ୍ଜୟ ରଥ ସମ୍ପୂର୍ଣ୍ଣ କୁମାରସମ୍ଭବର ଅନୁବାଦ କରି ଚତୁର୍ଥ ସର୍ଗ ବା ରତିବିଳାପ ସର୍ଗର ମଧ୍ୟ ଅନୁବାଦ କରିଯାଇଛନ୍ତି । ତେବେ ଆଉ ଥରେ ଅନୁବାଦର ପ୍ରୟୋଜନ କଣ ? ଅବଶ୍ୟ ଏହି ପ୍ରଶ୍ନ ଉଠିବା ସ୍ୱାଭାବିକ । କିନ୍ତୁ ଚିତ୍ରକର ଥରେ ପଦ୍ମର ଚିତ୍ର କଲେ ମଧ୍ୟ ଅନ୍ୟ ଚିତ୍ରକର ସେଥିରୁ ବିରତ ହୁଅନ୍ତି ନାହିଁ । ତା'ପରେ ଏହି ଚାଳିଶ ବର୍ଷ ଭିତରେ ଓଡ଼ିଆ ଭାଷାର ଅନେକ ପରିବର୍ତ୍ତନ ଓ ଅଗ୍ରଗତି ହୋଇଛି । ଏଣୁ ଅନ୍ୟ ଅନୁବାଦର ମଧ୍ୟ ପ୍ରୟୋଜନୀୟତା ଅଛି । ଉଦାହରଣସ୍ୱରୂପ ଦ୍ୱିତୀୟ ପଦକୁ ନିଆଯାଉ—

୰ ମୃତ୍ୟୁଞ୍ଜୟ ରଥେ ଅନୁବାଦ କରିଛନ୍ତି—

ଉନ୍ମୀଳି ନେତ୍ର ବେନି ମୋହ ଅନ୍ତରେ
ନିହିଲା ବରାରୋହା ତହିଁ ଉପରେ;
ଅତୃପ୍ତ ନୟନରେ ନିରେଖି ସତୀ
ପତି କି ନ ଜାଣିଲା ଲୁପ୍ତ ମୂରତି ।

କିନ୍ତୁ ସତ୍ୟାନନ୍ଦ ଚମ୍ପତିରାୟ ଅନୁବାଦ କରିଛନ୍ତି—

ଦେଖିଲେ ଯେତେବାର ପ୍ରିୟ ମଦନେ,
ମିଳଇ ନାହିଁ ତୃପ୍ତି ଯେଉଁ ନୟନେ
ସେ ବେନି ନୟନ ସେ ଚେତନା ଲଭି
ମେଲିଲେ ଦେଖିବାକୁ ସେ ଚାରୁ ଛବି ।
ମାତ୍ର ଯେ ସେହି ରୂପ ବିଲୁପ୍ତ ଅତି
ପାରିଲେ ନାହି ବୁଝି ଏ କଥା ରତି ।

Digitized by srujanika@gmail.com

ଏହି ଉଭୟ ପଦର ଭାଷାରେ ପ୍ରଭେଦ ସ୍ପଷ୍ଟ, ପରବର୍ତ୍ତୀ ଭାଷା ସରଳ । ଆଉ ଗୋଟିଏ ପଦ ନିଆଯାଉ ରତିବିଳାପର ୩୦ ଶ୍ଳୋକ ହେଉଛି–

ଗତ ଏବ ନ ତେ ନିବର୍ତ୍ତତେ ସ ସଖା ଦୀପ ଇବାନିଳା ହତଃ
ଅହମସ୍ୟ ଦଶେବ ପଶ୍ୟ ମାମ୍‌ବିଷହ୍ୟ ବ୍ୟସନେନ ଧୂମିତାମ୍ ॥

୰ ମୃତ୍ୟୁଞ୍ଜୟ ରଥେ ଏହାର ଅନୁବାଦ କରିଛନ୍ତି–

ବାତ ଆହତ ଦୀପ ପରାୟେ ଯାଇ
ଆଉ ତ ନ ଫେରନ୍ତି ମୋ ବନ୍ଧୁ କାହିଁ ?
ମୁଁ ଏବେ ଭଜୁଅଛି ଦୁଃଖେ ବିବଶା
ଧୂମାୟିତ ସେ ଦୀପ ଦଶିର ଦଶା ।

ସଂସ୍କୃତରେ ତେ (ତୁମ) ଅଛି ଏବଂ ଏଠାରେ ରତି ବସନ୍ତକୁ କହୁଛନ୍ତି । କିନ୍ତୁ ୰ମୃତ୍ୟୁଞ୍ଜୟ ରଥେ 'ମୋ ବନ୍ଧୁ କାହିଁ' ବୋଲି କାହିଁକି ଅନୁବାଦ କଲେ, କିଛି ବୁଝା ପଡୁନାହିଁ । ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟଙ୍କ ଅନୁବାଦରେ ଏ ଭୁଲ ଦେଖାଯାଏ ନାହିଁ । ସେ ଅନୁବାଦ କରିଛନ୍ତି–

ବାହୁଡ଼ିବେ ନାହିଁଟି ସଖା ତୁମ୍ଭରି
ପବନେ ପ୍ରତିହତ ପ୍ରଦୀପ ପରି,
ମୁଁ ରହିଗଲି ଦଗଧ ସଳିତା ସମ
ଅନ୍ତରେ ବହି ଖାଲି ବ୍ୟଥାର ଧୂମ ।

କିନ୍ତୁ ଏ ଦୁଇ ପଦକୁ ତୁଳନା କଲେ ସଙ୍ଗେ ସଙ୍ଗେ ଦେଖିବାକୁ ମିଳୁଛି ଯେ ୰ମୃତ୍ୟୁଞ୍ଜୟ ରଥଙ୍କ ଚତୁର୍ଥ ପଙ୍‌କ୍ତି 'ଧୂମାୟିତ ସେ ଦୀପ ଦଶିର ଦଶା' ଭଲ ହୋଇଛି ।

ଆଉ ଗୋଟିଏ ପଦ ନିଆଯାଉ । କାଳିଦାସଙ୍କ ୩୩ ଶ୍ଳୋକ ହେଉଛି–

ଶଶିନା ସହ ଯାତି କୌମୂଦୀ ସହ ମେଘେନ ତଡ଼ିତ୍ ପ୍ରଲୀୟତେ
ପ୍ରମଦାଃ ପତିବର୍ତ୍ମଗା ଇତି ପ୍ରତିପନ୍ନଂ ବିଚେତନୈ ରପି ।

୰ ମୃତ୍ୟୁଞ୍ଜୟ ରଥଙ୍କ ଅନୁବାଦ–

ଶଶି ସଙ୍ଗତେ ମିଶି କୌମୁଦୀ ଯାଏ
ମେଘ ଗଲେ କି ଆଉ ବିଦ୍ୟୁତ ଥାଏ ?
ନିରତେ ପତି ଅନୁଗତା ଅଙ୍ଗନା
ଚେତାଏ ଏହା, ଯାର ନାହିଁ ଚେତନା ।

Digitized by srujanika@gmail.com

ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟଙ୍କ ଅନୁବାଦ—

ଚାନ୍ଦ ସହିତେ ଲୁଚି ଯାଏ ଚାନ୍ଦିନୀ
ବିଲୀନ ହୁଏ ମେଘ ସହ ଦାମିନୀ;
ଅଚେତନେ ତ ଅଛି ଏସନ ଗତି
ପତିର ପଥ ଅନୁସରଇ ସତୀ ।

ଏଠାରେ ସ୍ପଷ୍ଟ ଉପଲବ୍ଧ ହେଉଛି ଯେ ଶ୍ରୀ ସତ୍ୟାନନ୍ଦଙ୍କ ଅନୁବାଦ ଭଲ ହୋଇଛି । ବିଶେଷ କରି ଶେଷ ଦୁଇଧାଡ଼ି ଆହୁରି ଭଲ ହୋଇଛି । ଏଠାରେ ଶବ୍ଦବନ୍ଧ, ଶବ୍ଦ ଯୋଜନା ଓ ଭାଷା ବୈଭବ ଉତ୍କୃଷ୍ଟତର ଓ ମଧୁରତର ହୋଇଛି । ଆହୁରି ମଧ୍ୟ 'ସୀତାବିଳାପ'ରେ ବ୍ୟବହୃତ ଛନ୍ଦ କଳହଂସକେଦାର ଏଠାରେ ମଧ୍ୟ ଗୃହୀତ ହୋଇଛି ଓ ଏହି ଛନ୍ଦଟି କରୁଣ ରସ ପକ୍ଷରେ ନିତାନ୍ତ ଅନୁକୂଳ ।

ଚିତ୍ରବୈଭବ ଏହାର ମୂଲ୍ୟ ଅଧିକ ବଢ଼ାଇ ଦେଇଛି । ବହୁ ରଙ୍ଗିନ ଚିତ୍ରସମ୍ବଳିତ ପୁସ୍ତକ ଓଡ଼ିଆରେ ଅଳ୍ପ କେଇଖଣ୍ଡି ମାତ୍ର ଅଛି । ସେସବୁ ପୁସ୍ତକର ଚିତ୍ରଗୁଡ଼ିକ ତୁଳନାରେ ରତିବିଳାପର ଚିତ୍ରଗୁଡ଼ିକ ଅଧିକ ସୁନ୍ଦର ହୋଇଛି ।

ଲେଖକଙ୍କର ଏହି ଅଭିନବ ଉଦ୍ୟମକୁ ମୁଁ ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

ସୁନିଆଁ
୧୩୬୪ ସାଲ

**ଶ୍ରୀ ପ୍ରହ୍ଲାଦ ପ୍ରଧାନ**
ଅଧ୍ୟକ୍ଷ, ଫକୀରମୋହନ କଲେଜ



Digitized by srujanika@gmail.com

# ସୂଚନା

କାମ-କାନ୍ତା ରତିର କରୁଣ ବିଳାପ...

ନୂତନ ବୈଧବ୍ୟର ଦାରୁଣ ଦୁଃଖ ସହି ନପାରି କାମବିରହିତା ରତିର ନୟନରୁ ବ୍ୟଥାର ଯେଉଁ ବନ୍ୟା ବହିଗଲା, ତାଆରି ଗୋଟିଏ ସ୍ରୋତ ଇଯେ ମାତ୍ର...ସେ ସ୍ରୋତ ନିତ୍ୟ ଅଶ୍ରୁ-ସଜଳ...ନିତ୍ୟ କରୁଣ ରସୋଚ୍ଛଳ । ସେ ବିରହ ବ୍ୟଥାର ମୂର୍ଚ୍ଛନା ଏବେ ବି ବିରହୀ ବିରହିଣୀର ବୁକୁ ବିଦାରି ପକାଏ...ସୁକୋମଳ ମର୍ମସ୍ଥଳରେ କାରୁଣ୍ୟର କମ୍ପନ ସୃଷ୍ଟିକରେ ।

x x x

ବହୁ ଯୁଗ ତଳର କାହାଣୀ...

ମହେଶ୍ୱରଙ୍କର ପତ୍ନୀ ସତୀ, ପିତା ଦକ୍ଷଙ୍କ ମୁହଁରେ ପତି ନିନ୍ଦା ସହି ପାରିଲେ ନାହିଁ । ଯାଗ କୁଣ୍ଡରେ ନିଜର କୋମଳ ତନୁ ତନିମାଟିକୁ ଆହୁତି ଦେଇ ଦେଲେ । ପୁଣି ସେ ଭୂତଳରେ ଆଉ ଥରେ ଜନ୍ମ ହେବାର କାମନାକରି ମେନାଙ୍କର ଗର୍ଭସ୍ଥ ହେଲେ । କନ୍ୟାକୁଳୋତ୍ତମା ମେନା, ନଗାଧିରାଜ ହିମାଳୟଙ୍କର ପାଟମହିଷୀ । ଯଥା ସମୟରେ ମେନାଙ୍କ ଗର୍ଭରୁ ସତୀ ଜନ୍ମ ହେଲେ । ପର୍ବତରାଜ ହିମାଳୟ ଏହି କନ୍ୟାଟିର ନାମ ପାର୍ବତୀ ଓ ଉମା ରଖିଲେ ।

ଅଲିଅଳୀ ଉମା ପିତା-ମାତାଙ୍କର ସ୍ନେହ ସୋହାଗ ପାଇ ଦିନକୁଦିନ ଶଶିକଳା ପରି ବଢ଼ିବାକୁ ଲାଗିଲେ । କ୍ରମେ ତାଙ୍କର କମନୀୟ କଳେବର ନବଯୌବନର ସ୍ପର୍ଶରେ ରମଣୀୟ ହୋଇ ଉଠିଲା । ମହର୍ଷି ନାରଦ ସୁକୁମାରୀ ପାର୍ବତୀଙ୍କୁ ପିତାଙ୍କ ସମୀପରେ ଦେଖି ହିମାଳୟଙ୍କୁ କହିଥିଲେ—'ଆପଣଙ୍କର ଏହି କନ୍ୟା ଦିନେ ତାର ପ୍ରେମର ପ୍ରଭାବରେ ପରମେଶ୍ୱରଙ୍କୁ ପତି ରୂପରେ ପାଇ ପାରିବ ।'

କେତେଦିନ ପରେ...ଦିନେ ମହେଶ୍ୱର ତପସ୍ୟା କରିବା ନିମନ୍ତେ ହିମାଳୟର ସାନୁ ପ୍ରଦେଶରେ ଆସି ଉପସ୍ଥିତ ହେଲେ । ଏ ସମ୍ବାଦ ପାଇ ଗିରିରାଜ ହିମାଳୟ ସେଠାକୁ ଯାଇ ଧୂପ ଅର୍ଘ୍ୟ ଦ୍ୱାରା ଚନ୍ଦ୍ରଶେଖରଙ୍କୁ ଅର୍ଚ୍ଚନା କଲେ ଏବଂ ତାଙ୍କର ସେବା କରିବା ନିମନ୍ତେ କନ୍ୟା ଉମାଙ୍କୁ ପଠାଇ ଦେଲେ । ସୁକୁମାରୀ ରାଜକନ୍ୟା ପାର୍ବତୀ ଶିବ ପୂଜା ପାଇଁ ଫୁଲ ତୋଳିଲେ, ତପବେଦୀ ପରିଷ୍କାର ପରିଚ୍ଛନ୍ନ କଲେ, ପୂଜା ଓ ଅଭିଷେକ ଲାଗି ଜଳ ଆଣିଲେ ଏବଂ ତପସ୍ୟା ନିମନ୍ତେ କୁଶାଦି ସଂଗ୍ରହ କଲେ ।



Digitized by srujanika@gmail.com

ଏତିକିବେଳେ ସ୍ୱର୍ଗରେ ଏକ ଭୟାବହ ଅବସ୍ଥା ଉପସ୍ଥିତ ହେଲା । ପ୍ରବଳ ପ୍ରତାପୀ ତାରକ ଦୈତ୍ୟ ଘୋର ଅତ୍ୟାଚାର କଲା । ଭୀତିବିହ୍ୱଳ ଦେବକୁଳ ଦୈତ୍ୟର ଅତ୍ୟାଚାରରୁ ରକ୍ଷା ପାଇବା ନିମନ୍ତେ ପିତାମହ ବ୍ରହ୍ମାଙ୍କ ନିକଟରେ ପହଞ୍ଚି ନିଜର ଦୁଃଖ ନିବେଦନ କଲେ । ମୁଖଶ୍ରୀ ସେମାନଙ୍କର ମଳିନ, ତେଜ ନିଷ୍ପ୍ରଭ ଓ ମନ ଅବସାଦଗ୍ରସ୍ତ । ତାଙ୍କର ଏହି କାତର ପ୍ରାର୍ଥନାରେ ବ୍ରହ୍ମାଙ୍କର ମନ କରୁଣାୟିତ ହେଲା । ସେ କହିଲେ–'ପ୍ରତାପୀ ତାରକାସୁର ମୋର ବର ଲାଭ କରି ବଳୀୟାନ ହୋଇଛି । ତୁମ୍ଭେମାନେ ତାକୁ ପରାଜିତ କରି ପାରିବ ନାହିଁ । ମହାଦେବ ଗିରିରାଜ କନ୍ୟା ପାର୍ବତୀଙ୍କ ପାଣିଗ୍ରହଣ କଲେ ତାଙ୍କର ଔରସରୁ ଯେଉଁ ପୁତ୍ର ଜାତ ହେବ, ସେହି କେବଳ ତାରକ ବିଜୟୀ ହୋଇ ପାରିବ ।'

କିନ୍ତୁ ହର ପାର୍ବତୀଙ୍କର ମିଳନ କିପରି ବା ହେବ ? ମହାଦେବ ବର୍ତ୍ତମାନ ତପସ୍ୟାରେ ସମାହିତ । କିଏ ତାଙ୍କର ଏହି ତପ ଭାଙ୍ଗିବ ? ଦେବତାମାନଙ୍କର ମନ ପୁଣି ଚିନ୍ତାକୁଳିତ ହେଲା । ଦେବରାଜ ଇନ୍ଦ୍ର ଦେଖିଲେ ଏ କାର୍ଯ୍ୟ ପାଇଁ କେବଳ କାମଦେବହିଁ ସମର୍ଥ । ତହୁଁ ସେ ତାଙ୍କୁ ସ୍ମରଣ କଲେ । ସ୍ମରଣ ମାତ୍ରେ କାମଦେବ ଶଚୀପତିଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ସେତେବେଳେ କଣ୍ଠ ଦେଶରେ ତାଙ୍କର ପ୍ରଣୟିନୀ ରତିଙ୍କର ବଳୟର ଚିହ୍ନ ସ୍ପଷ୍ଟ ଦେଖା ଯାଉଥିଲା । ସେ ଗାଢ଼ ଆଲିଙ୍ଗନର ଦାଗ ନିଭି ନ ଥିଲା । ଇନ୍ଦ୍ରଙ୍କ ଆଦେଶରେ ହରଙ୍କର ତପ ଭାଙ୍ଗିବା ପାଇଁ କାଳ ବିଳମ୍ୱ ନକରି କନ୍ଦର୍ପ ହିମାଳୟ ଅଭିମୁଖେ ଯାତ୍ରା କଲେ । କୌଣସି ବିପଦର ଆଶଙ୍କା କରି ପ୍ରିୟ ସଖା ଋତୁରାଜ ବସନ୍ତ ଓ ଚିରାନୁରାଗିଣୀ ରତି ତାଙ୍କର ଅନୁଗମନ କଲେ ।

କନ୍ଦର୍ପଙ୍କର ଉପସ୍ଥିତିରେ ହିମାଳୟର ପ୍ରକୃତିରେ ହଠାତ୍ ପରିବର୍ତ୍ତନ ଦେଖାଗଲା । ବସନ୍ତର ଆଗମନରେ ବୃକ୍ଷଲତା ପଲ୍ଲବିତ ହୋଇ ଉଠିଲେ । ମଳୟର ସ୍ପର୍ଶରେ ଗନ୍ଧଭରା କୁସୁମ କଳି ଫୁଟି ଉଠିଲା । କୋକିଳର କୁହୁ ପଞ୍ଚମ ତାନରେ ଶୁଣାଗଲା । ଜଡ଼ ଓ ଜୀବନରେ ଏକ ଅପୂର୍ବ ଭାବାବେଶ ସୃଷ୍ଟି ହେଲା ।

କନ୍ଦର୍ପ ନିଜକୁ ବୃକ୍ଷାନ୍ତରାଳରେ ଲୁକ୍କାୟିତ ରଖି ଧ୍ୟାନମଗ୍ନ ମହାଦେବଙ୍କ ଉଦ୍ଦେଶ୍ୟରେ ଲକ୍ଷ୍ୟ ସ୍ଥିର କଲେ । ମାତ୍ର ହରଙ୍କ କପାଳସ୍ଥିତ ତୃତୀୟ ନେତ୍ରର ଅଗ୍ନିକଣା ନିରୀକ୍ଷଣ କରି ମଦନ ଆତଙ୍କିତ ହୋଇ ଉଠିଲେ । ଭୟରେ ଦେହ ତାଙ୍କର ଅବଶ ହୋଇ ଆସିଲା । କିପରି ସେ ବାଣ ଯୋଜନା କରିବେ, କିଛି ସ୍ଥିର କରିପାରିଲେ ନାହିଁ । ଏତିକିବେଳେ ଅନୁପମା ରୂପବତୀ ପାର୍ବତୀ ହର ପୂଜା କରିବାପାଇଁ ସେଠାରେ ଉପସ୍ଥିତ ହେଲେ । ଉମାଙ୍କ ରୂପଲାବଣ୍ୟ ନିରୀକ୍ଷଣ କରି ମହାଦେବଙ୍କ ଚିତ୍ତ ଜୟ କରିବା ସମ୍ଭବ ହୋଇ ପାରିବ ବୋଲି ମଦନ ମନେ ମନେ ଆନନ୍ଦିତ ହେଲେ । ଠିକ୍ ଏହି ସମୟରେ ଅଳ୍ପ ସମୟ ପାଇଁ ମହେଶ୍ୱର ତପସ୍ୟାରୁ ବିରତ



Digitized by srujanika@gmail.com

ହୋଇଥିଲେ । ପାର୍ବତୀ ତାଙ୍କର ଚରଣ ବନ୍ଦନା କଲେ । ପାର୍ବତୀଙ୍କର ପୂଜାରେ ମହାଦେବ ସନ୍ତୁଷ୍ଟ ହୋଇ ତାଙ୍କୁ ଆଶୀର୍ବାଦ କରି କହିଲେ–'ଏପରି ପତି ତୁମେ ଲାଭ କରିବ, ଯେ ତୁମ ଛଡ଼ା ଆଉ କାହାରି ଚିନ୍ତା କରିବ ନାହିଁ ।' ଏହା କହି ସେ ଗୌରୀ ହସ୍ତରୁ କିଶଳୟର ମାଳା ଗ୍ରହଣ କରିବାକୁ ହସ୍ତ ଉତ୍ତୋଳନ କଲେ ।

କାମଦେବ ଦେଖିଲେ, ଏହି ହେଉଛି ଉପଯୁକ୍ତ ସମୟ । ଆଉ ଅପେକ୍ଷା ନକରି ସେ ମହାଦେବଙ୍କ ପ୍ରତି ତାଙ୍କର କୁସୁମ ଧନୁରେ ଅମୋଘ ସମ୍ମୋହନ ବାଣ ଯୋଜନା କଲେ । ଏଥିରେ ହରଙ୍କ ଚିତ୍ତରେ କିଞ୍ଚିତ୍ ଚଞ୍ଚଳତା ଦେଖାଗଲା । କିନ୍ତୁ ଜିତେନ୍ଦ୍ରିୟ ସେ । ଏ ଚାଞ୍ଚଲ୍ୟକୁ ଦମନ କରି ଏହାର ସୃଜନକାରୀ କିଏ ତାହା ଜାଣିବାକୁ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲେ । ଅଦୂରରେ କୁସୁମଧନୁଧାରୀ ମଦନକୁ ଦେଖିବାକୁ ପାଇଲେ ।

ମହେଶ୍ୱରଙ୍କ କ୍ରୋଧର ସୀମା ରହିଲା ନାହିଁ । ତାଙ୍କର ତୃତୀୟ ନୟନ ଧକ୍ ଧକ୍ ହୋଇ ଜଳିବାକୁ ଲାଗିଲା । ସେହି ରୋଷୋଜ୍ଜ୍ୱଳ ନୟନରୁ ପ୍ରଜ୍ୱଳିତ ଅଗ୍ନିଶିଖା ବହିର୍ଗତ ହେଲା । ଏହି ପ୍ରଚଣ୍ଡ ଅଗ୍ନିଶିଖା ଚାହୁଁଚାହୁଁ ମଦନକୁ ଜାଳି ପୋଡ଼ି ପାଉଁଶ କରି ପକାଇଲା । ଏହି ଭୟଙ୍କର ଦୃଶ୍ୟରେ ଶଙ୍କିତା ରତି ଚମକି ଉଠିଲେ । ପ୍ରାଣବଲ୍ଲଭ ମଦନ ଜଳି ପାଉଁଶ ହୋଇ ଯାଉଥିବା ଦେଖି ଭୀତତ୍ରସ୍ତା କାମପ୍ରିୟା ରତି ଏକାବେଳକେ ହତଜ୍ଞାନ ହେଲେ । ଏହି ସର୍ବନାଶ ଦୃଶ୍ୟ ଦେଖିବାକୁ ତାଙ୍କର ଆଉ ଚେତନା ନଥିଲା ।

ତା ପରେ...



Digitized by srujanika@gmail.com

■ମହାକବି କାଳିଦାସ କୃତ ■

# ରତି ବିଳାପଃ

-୧-

ଅଥ ମୋହପରାୟଣା ସତୀ ବିବଶା କାମ-ବଧୂର୍ବିବୋଧିତା,
ବିଧିନା ପ୍ରତିପାଦୟିଷ୍ୟତା ନବବୈଧବ୍ୟମସହ୍ୟ ବେଦନମ୍ ।

-୨-

ଅବଧାନ ପରେ ଚକାର ସା ପ୍ରଳୟାନ୍ତୋନ୍ମିଷିତେ ବିଲୋଚନେ ।
ନ ବିବେଦ ତୟୋରତୃପ୍ତୟୋଃ ପ୍ରିୟମତ୍ୟନ୍ତ ବିଲୁପ୍ତ ଦର୍ଶନମ୍ ।

-୩-

ଅୟି ଜୀବିତ ନାଥ ଜୀବସୀତ୍ୟଭିଧାୟୋତ୍ଥିୟା ତୟା ପୁରଃ,
ଦଦୃଶେ ପୁରୁଷାକୃତି କ୍ଷିତୌ ହରକୋପାନଳ ଭସ୍ମ କେବଳମ୍ ।

-୪-

ଅଥ ସା ପୁନରେବ ବିହ୍ୱଳା ବସୁଧାଲିଙ୍ଗନ ଧୂସରସ୍ତନୀ,
ବିଲଲାପ ବିକୀର୍ଣ୍ଣ ମୂର୍ଦ୍ଧଜା, ସମ ଦୁଃଖାମିବ କୁର୍ବତୀ ସ୍ଥଳୀମ୍ ।

-୫-

ଉପମାନମଭୂଦ୍ବିଳାସିନାଂ କରଣଂ ଯତ୍ତବ କାନ୍ତିମତ୍ତୟା,
ତଦିଦଂ ଗତମୀଦୃଶୀଂ ଦଶାଂ ନ ବିଦୀର୍ଯ୍ୟେ କଠିନାଃ ଖଳୁ ସ୍ତ୍ରିୟଃ ।

-୬-

କ୍ୱ ନୁ ମାଂ ତ୍ୱଦଧୀନଜୀବିତାଂ ବିନିକୀର୍ଯ୍ୟ କ୍ଷଣଭିନ୍ନ ସୌହୃଦଃ,
ନଳିନୀକ୍ଷତସେତୁବନ୍ଧନୋ ଜଳ ସଂଘାତଇବାଽସିବିଦ୍ରୁତଃ ।

Digitized by srujanika@gmail.com

-୭-

କୃତବାନସି ବିପ୍ରିୟଂ ନମେ ପ୍ରତିକୂଳଂ ନ ଚ ତେ ମୟା କୃତମ୍
କିମକାରଣମେବ ଦର୍ଶନଂ ବିଳପନ୍ତ୍ୟୈ ରତୟେ ନ ଦୀୟତେ ?

-୮-

ସ୍ମରସି ସ୍ମର, ମେଖଳାଗୁଣୈରତ ଗୋତ୍ରସ୍ଖଳିତେଷୁ ବନ୍ଧନମ୍,
ଚ୍ୟୁତ କେଶର-ଦୂଷିତେକ୍ଷଣାନ୍ୟବତଂସୋତ୍ପଳତାଡ଼ନାନି ବା ।

-୯-

ହୃଦୟେ ବସସୀତି ମତ୍ପ୍ରିୟ ଯଦ୍‌ବୋଚସ୍ତଦବୈମି କୈତବମ୍,
ଉପଚାର ପଦଂ ନ ଚେଦିଦଂ ତ୍ୱମନଙ୍ଗ କଥମକ୍ଷତା ରତିଃ ?

-୧୦-

ପରଲୋକ ନବ ପ୍ରବାସିନଃ ପ୍ରତିପତ୍‌ସ୍ୟେ ପଦବୀମହଂ ତବ,
ବିଧିନା ଏଷଃ ଜନ ବଞ୍ଚିତ ତ୍ୱଦଧୀନଂ ଖଳୁ ଦେହିନାଂ ସୁଖମ୍ ।

-୧୧-

ରଜନୀ ତିମିରାବଗୁଣ୍ଠିତେ ପୁର ମାର୍ଗେ ଘନ ଶବ୍ଦ ବିକ୍ଳବା,
ବସତି ପ୍ରିୟ, କାମିନାଂସ୍ତ୍ୱିଦରତେ ପ୍ରାପୟିତୁଂ କ ଇଶ୍ୱରାଃ ?

-୧୨-

ନୟନାନ୍ୟରୁଣାନି ଘୂର୍ଣ୍ଣୟନ୍ ବଚନାନି ସ୍ଖଳୟନ୍ ପଦେ ପଦେ
ଅସତି ତ୍ୱୟି ବାରୁଣୀ ମଦଃ ପ୍ରମଦାନାମଧୁନା ବିଡ଼ମ୍ବନା ।

-୧୩-

ଅବଗମ୍ୟ କଥୀକୃତଂ ବପୁଃ, ପ୍ରିୟବନ୍ଧୋସ୍ତବ ନିଷ୍‌ଫଳୋଦୟଃ,
ବହୁଳେଽପି ଗତେ ନିଶାକରସ୍ତନୁତାଂ ଦୁଃକମନଙ୍ଗ, ମୋକ୍ଷ୍ୟତି ।

-୧୪-

ହରିତାଽରୁଣ ଚାରୁ ବଂଧନଃ କଳପୁଂସ୍କୋକିଳ ଶବ୍ଦ ସୂଚୀତ,
ବଦ ସମ୍ପ୍ରତି କସ୍ୟ ବାଣତାଂ ନବଚୂତ ପ୍ରସବୋ ଗମିଷ୍ୟତି ।

-୧୫-

ଅଳି ପଙ୍‌କ୍ତିରନେକସ୍ତ୍ୱୟା ଗୁଣକୃତ୍ୟେ ଧନୁଷୋ ନିଯୋଜିତା,
ବିରୁତୈଃ କରୁଣସ୍ୱନୈରିୟଂ ଗୁରୁଶୋକା ମନୁରୋଦିତୀବ ମାମ୍ ।



Digitized by srujanika@gmail.com

-୧୬-

ପ୍ରତିପଦ୍ୟ ମନୋହରଂ ବପୁଃ, ପୁନରପ୍ୟାଦଶ ତାବଦୁତ୍‌ଥିତଃ,
ରତି ଦୂତିପଦେଷୁ କୋକିଳାଂ ମଧୁରାଳାପନିସର୍ଗପଣ୍ଡିତାମ୍ ।

-୧୭-

ଶିରସା ପ୍ରଣିପତ୍ୟ ଯାଚିତାନ୍ୟୁପଗୂଢ଼ାନି ସବେପଥୂନି ଚ,
ସୁରତାନି ଚ ତାନି ତେ ରହଃ, ସ୍ମର, ସଂସ୍ମୃତ୍ୟ ନ ଶାନ୍ତିରସ୍ତି ମେ ।

-୧୮-

ରଚିତଂ ରତି ପଣ୍ଡିତ ତ୍ୱୟା, ସ୍ୱୟମଙ୍ଗେଷୁ ମମେକମାର୍ତ୍ତବମ୍,
ଧ୍ରିୟତେ କୁସୁମ ପ୍ରସାଧନଂ ତବ ତଚ୍ଚାରୁବପୁର୍ନ ଦୃଶ୍ୟତେ ।

-୧୯-

ବିବୁଧୈରସି ଯସ୍ୟ ଦାରୁଣୈରସମାପ୍ତେ ପରିକର୍ମଣି ସ୍ମୃତଃ,
ତମିମଂ କୁରୁ ଦକ୍ଷିଣେତରଂ ଚରଣଂ ନିର୍ମିତରାଗମେହି ମେ ।

-୨୦-

ଅହମେତ୍ୟ ପତଙ୍ଗବର୍ତ୍ମନା ପୁନରଙ୍କାଶ୍ରୟଣୀ ଭବାମି ତେ,
ଚତୁରୈଃ ସୁରକାମିନୀଜନୈଃ ପ୍ରିୟ, ଯାବନ୍ନ ବିଲୋଭ୍ୟସେ ଦିବି ।

-୨୧-

ମଦନେନ ବିନାକୃତା ରତିଃ କ୍ଷଣମାତ୍ରଂ କିଲ ଜୀବିତେତି ମେ,
ବଚନୀୟମିଦଂ ବ୍ୟବସ୍ଥିତଂ ରମଣ, ତ୍ୱାମନୁଯାମି ଯଦ୍ୟପି ।

-୨୨-

କ୍ରିୟତାଂ କଥମନ୍ତ୍ୟ ମଣ୍ଡନଂ ପରଲୋକାନ୍ତରିତସ୍ୟ ତେ ମୟା,
ସମମେବଗତୋଽସ୍ତ୍ୟତର୍କିତାଂ ଗତିମଙ୍ଗେନ ଚ ଜୀବିତେନ ଚ ।

-୨୩-

ଋଜୁତାଂ ନୟତଃ ସ୍ମରାମି ତେ ଶରମୁତ୍ସଙ୍ଗନିଷର୍ଣ୍ଣଧନ୍ୱନଃ,
ମଧୁନା ସହ ସସ୍ମିତାଂ କଥାଂ ନୟନୋପାନ୍ତବିଲୋକିତଶ୍ଚ ଯତ୍ ।

-୨୪-

କ୍ୱ ନୁ ତେ ହୃଦୟଙ୍ଗମଃ ସଖା କୁସୁମାଯୋଜିତକାର୍ମୁକୋ ମଧୁଃ,
ନ ଖଲୂଗ୍ରରୁଷା ପିନାକିନା ଗମିତଃ ସୋଽପିସୁହୃଦ୍‌ଗତାଂ ଗତିମ୍ ।



Digitized by srujanika@gmail.com

-୨୫-

ଅଥ ତୈଃ ପରଦେବିତାକ୍ଷରୈ ର୍ହୃଦୟେ ଦିଗ୍ଧଶରୈରିବା ହତଃ,
ରତିମଭ୍ୟୁପପତ୍ତୁମାତୁରାଂ ମଧୁରାତ୍ମା ନଦର୍ଶୟତ୍ ପୁରଃ ।

-୨୬-

ତମବେକ୍ଷ୍ୟ ରୁରୋଦ ସା ଭୃଶଂ ସ୍ତନସମ୍ବାଧମୁରୋ ଜଘାନ ଚ,
ସ୍ୱଜନସ୍ୟ ହି ଦୁଃଖମଗ୍ରତୋ ବିବୃତ ଦ୍ୱାରମିବୋ ପଜାୟତେ ।

-୨୭-

ଇତି ଚୈନମୁବାଚ ଦୁଃଖିତା, ସୁହୃଦଃ ପଶ୍ୟ ବସନ୍ତ, କି ସ୍ଥିତମ୍,
ତଦିଦଂ କଣଶୋ ବିକୀର୍ଯ୍ୟତେ, ପବନୈର୍ଭସ୍ମ କପୋତକର୍ବୁରମ୍ ।

-୨୮-

ଅୟି ସମ୍ପ୍ରତି ଦେହି ଦର୍ଶନଂ ସ୍ମର ପର୍ଯ୍ୟୁତ୍ସୁକ ଏଷ ମାଧବଃ
ଦୟିତା ସ୍ୱନବସ୍ଥିତଂ ନୃଣା ନ ଖଲୁ ପ୍ରେମ ଚଳଂ ସୁହୃଦ୍ଜନେ ।

-୨୯-

ଅମୁନା ନନୁ ପାର୍ଶ୍ୱବର୍ତ୍ତିନା ଜଗଦାଜ୍ଞା ସସୁରାସୁରଂ ତବ,
ବିସତନ୍ତୁଗୁଣସ୍ୟ କାରିତଂ ଧନୁଷଃ ପେଲବ ପୁଷ୍ପପତ୍ରିଣଃ ।

-୩୦-

ଗତ ଏବ ନ ତେ ବିବର୍ତ୍ତତେ, ସ ସଖା ଦୀପଇବାନିଳାହତଃ,
ଅହମସ୍ୟ ଦଶେବ ପଶ୍ୟ ମାମବିଷହ୍ୟବ୍ୟସନେନ ଧୂମିତାମ୍ ।

-୩୧-

ବିଧିନା କୃତମର୍ଦ୍ଧବୈଶସଂ ନନୁ ମାଂ କାମବଧେ ବିମୁଞ୍ଚତା,
ଅନପାୟିନି ସଂଶୟଦ୍ରୁମେ ଗଜଭଗ୍ନେ ପତନାୟ ବଲ୍ଲରୀ ।

-୩୨-

ତଦିଦଂ କ୍ରିୟତାମନନ୍ତରଂ ଭବତା ବନ୍ଧୁଜନ ପ୍ରୟୋଜନମ୍,
ବିଧୁରାଂ ଜ୍ୱଳତାନିସର୍ଜନାନ୍ନନୁ ମାଂ ପ୍ରାପୟପତ୍ୟୁରନ୍ତିକମ୍ ।

-୩୩-

ଶଶିନା ସହ ଯାତି କୌମୁଦୀ ସହ ମେଘେନ ତଡ଼ିତ୍ ପ୍ରଲୀୟତେ,
ପ୍ରମଦାଃ ପତିବର୍ତ୍ମଗା ଇତି ପ୍ରତିପନ୍ନଂ ହିଁ ବିଚେତନୈରପି ।



Digitized by srujanika@gmail.com

-୩୪-

ଅମୁନୈବ କଷାୟିତସ୍ତନୀ ସୁଭଗେନ ପ୍ରିୟ ଗାତ୍ର ଭସ୍ମନା,
ନବ ପଲ୍ଲବ ସଂସ୍ତରେ ଯଥା ରଚୟିଷ୍ୟାମି ତନୁଂ ବିଭାବସୌ ।

-୩୫-

କୁସୁମାସ୍ତରଣେ ସହାୟତାଂ ବହୁଶଃ ସୌମ୍ୟ ଗତସ୍ତ୍ୱମାଧବଃ,
କୁରୁ ସମ୍ପ୍ରତିତାବଦାଶୁ ମେ ପ୍ରଣିପାତାଞ୍ଜଳି ଯାଚିତଶ୍ଚିତାମ୍ ।

-୩୬-

ତଦନୁ ଜ୍ୱଳନଂ ମଦର୍ପିତଂ ତ୍ୱରୟେର୍ଦକ୍ଷିଣବାତବୀଜନୈଃ,
ବିଦିତଂ ଖଲୁ ତେ ଯଥା ସ୍ମରଃ କ୍ଷଣମପ୍ୟୁତ୍ସହତେ ନ ମା ବିନା ।

-୩୭-

ଇତି ଚାପି ବିଧାୟ ଦୀୟତାଂ ସଲିଳସ୍ୟାଞ୍ଜଳିରେକ ଏବ ନୌ,
ଅବିଭଜ୍ୟ ପରତ୍ର ତଂ ମୟା ସହିତଃ ପାସ୍ୟତି ତେ ସ ବାଂଧବଃ ।

-୩୮-

ପରଲୋକବିଧୌ ଚ ମାଧବ ସ୍ମରମୁଦ୍ଦଶ୍ୟ ବିଲୋଲ ପଲ୍ଲବାଃ,
ନିବପେଃ ସହକାର ମଞ୍ଜରୀଃ ପ୍ରିୟଚୂତପ୍ରସବୋ ହି ତେ ସଖା ।

-୩୯-

ଇତି ଦେହ ବିମୁକ୍ତୟେ ସ୍ଥିତାଂ ରତିମାକାଶଭବା ସରସ୍ୱତୀ,
ସଫଂରୀହ୍ରଦଶୋଷବିକ୍ଳବାଂ ପ୍ରଥମା ବୃଷ୍ଟିରିବାନ୍ୱକମ୍ପୟତ୍ ।

-୪୦-

କୁସୁମାୟୁଧପତ୍ନୀ, ଦୁର୍ଲ୍ଲଭସ୍ତବ ଭର୍ତ୍ତା ନ ଚିରାଦ୍ଭବିଷ୍ୟତି,
ଶୃଣୁ ଯେନ ସ କର୍ମ୍ମଣାଂ ଗତଃ ଶଲଭତ୍ୱଂ ହରଲୋଚନାର୍ଚିଷି ।

-୪୧-

ଅଭିଳାଷ ମୁଦୀରିତେଂଦ୍ରିୟଃ ସ୍ୱସୁତାୟାମକରୋତ୍ ପ୍ରଜାପତିଃ,
ଅଥ ତେନ ନିଗୃହ୍ୟ ବିକ୍ରିୟାମଭିଶପ୍ତଃ ଫଳମେତ୍ଦନ୍ୱଭୂତ୍ ।

-୪୨-୪୩-

ପରିଣେଷ୍ୟତି ପାର୍ବତୀଂ ଯଦା ତପସା ତତ୍ ପ୍ରବଣୀକୃତୋ ହରଃ,
ଉପଲବ୍‌ଧ ସୁଖସ୍ତଦା ସ୍ମରଂ, ବପୁଷାସେନ ନିଯୋଜୟିଷ୍ୟତି ।



Digitized by srujanika@gmail.com

ଇତି ଚାହ ସ ଧର୍ମଯାଚିତଃ ସ୍ମରଶାପାବଧିତାଂ ସରସ୍ୱତୀମ୍
ଅଶନେରମୃତସ୍ୟ ଚୋଭୟୋ, ବଂଶିନଷ୍ଟାମ୍ବୁଧରାଶ୍ଚ ଯୋନୟଃ ।

-୪୪-

ତଦିଦଂ ପରିରକ୍ଷ ଶୋଭନେ ଭବିତବ୍ୟପ୍ରିୟସଙ୍ଗମଂ ବପୁଃ,
ରବିପୀତଜଳାତପାତ୍ୟୟେ ପୁନରୋଘେନ ଯୁଜ୍ୟତେ ନଦୀ ।

-୪୫-

ଇତ୍ଥଂ ରତେଃ କିମପି ଭୂତମଦୃଶ୍ୟରୂପଂ
ମଂଦୀଚକାର ମରଣବ୍ୟବସାୟବୁଦ୍ଧିମ୍,
ତତ୍ ପ୍ରତ୍ୟୟାଇ କୁସୁମାୟୁଧବଂଧୁରେନାମ୍
ଅଶ୍ୱାସୟଦ୍ ସୁଚରିତାର୍ଥପଦୈବଚୋଭିଃ ।

-୪୬-

ଅଥ ମଦନ-ବଧୂରୂପପ୍ଲାବାନ୍ତଂ ବ୍ୟସନକୃଶା ପରିପାଳୟା ସ୍ୱଭୂବ,
ଶଶିନ ଇବ ଦିବାତନସ୍ୟ ଲେଖା କିରଣ ପରିକ୍ଷୟଧୂସରା ପ୍ରଦୋଷମ୍ ।

■ ■ ■



Digitized by srujanika@gmail.com

—୧—

ଚେତନାହୀନା ସେହି କାମ-ବାନ୍ଧବୀ,
ଜାଗିଲେ ପରେ ପୁଣି ଚେତନା ଲଭି ।
ନବ ବୈଧବ୍ୟ ଦୁଃଖ ଭୋଗିବା ପାଇଁ,
ରତିକୁ ବିଧାତା କି ଦେଲେ ଚେତାଇ ।



Digitized by srujanika@gmail.com

— ୨ —

ଦେଖିଲେ ଯେତେବାର ପ୍ରିୟ ମଦନେ
ତୃପତି ନ ମିଳଇ ଯେଉଁ ନୟନେ,
ସେହି ନୟନ ରତି ଚେତନା ଲଭି
ମେଲିଲେ ଦେଖିବାକୁ ସେ ସ୍ୱରୁ ଛବି।
ମାତ୍ର ଯେ ସେହି ରୂପ ବିଲୁପ୍ତ ଅତି,
ପାରିଲେ ନାହିଁ ବୁଝି ଏ କଥା ସତୀ।



Digitized by srujanika@gmail.com

— ୩ —

ଜୀବିତେଶ ହେ ମୋର,ଜୀଇଛୁ ସତେ
ଏସନ କହି ରତି ଚେତନା ଘେନେ,
ତନୁଲତାକୁ ତୋଳି ଅତି ବିକଳେ
ଦେଖିଲେ ପଡ଼ିଅଛି ଆଗେ ଭୂତଳେ,
ହର କୋପରେ ଭସ୍ମ ପ୍ରାଣର ନାହା;
କେବଳ ପୁରୁଷର ଆକାରେ ଯାହା ।



Digitized by srujanika@gmail.com

–୪–

ତା ପରେ ହୋଇ ଶୋକେ ବିହ୍ୱଳା ଅତି
ଲୋଟିଲେ ବସୁଧାରେ ନିମିଷେ ସତୀ।
ଧୂଳିରେ ଧୂସରିତ କୁଚ ଯୁଗଳ,
ଆଲୁଳାୟିତ ହେଲା ଘନ କୁନ୍ତଳ ।
ସମ ଦୁଃଖରେ ଦୁଃଖୀ କରି କାନନ
ଅଧୀରେ ଅତି ରତି କଲେ ରୋଦନ।



Digitized by srujanika@gmail.com

– ୪ –

ତୁମରି ଦେହ ଆହା ଏମନ୍ତ ଶୋଭା,
ଜଗତ ଜନ-ମନ-ନୟନ ଲୋଭା,
ସେ ଦେହ ଉପମାନ ଥିଲା କେବଳ,
ତୁଳନା କାଳେ ରୂପବାନ ଜନର ।
ତାହାରି ପରିଣତି ହେଲା ଏପରି;
ନିରେଖି ସେହି ଦଶା କହ କିପରି
ନ ଫାଟି ରହିଅଛି ଏ ମୋର ଛାତି,
ବଡ଼ କଠିନ ସତେ ଏ ନାରୀ ଜାତି ।



Digitized by srujanika@gmail.com

– ୬ –

ଜଳ ପ୍ରବାହ ଯେହ୍ନେ ବନ୍ଧ ଭସାଇ
ବରଜି ନଳିନୀକୁ ପଳାଏ କାହିଁ,
ତେସନେ ହୃଦୟର ପ୍ରୀତି-ବନ୍ଧନ,
ତୁଟାଇ ନିମିଷକେ ପ୍ରିୟ ମଦନ,
ଛାଡ଼ି ହେ ମତେ କାହିଁ କଲ ଗମନ,
ତୁମ ଅଧୀନ ସିନା ମୋର ଜୀବନ।



Digitized by srujanika@gmail.com

— ୭ —

କେବେ ତ କରି ନାହଁ ମୋର ଅହିତ,
କରି ନାହିଁ ମୁଁ ବାଦ ତୁମ ସହିତ,
ଅକାରଣରେ ତେବେ କାହିଁକି ପ୍ରିୟ
ବିଳପନ୍ତୀ ରତିକି ଦେଖା ନ ଦିଅ ?



Digitized by srujanika@gmail.com

— ୮ —

ଆନ ଲଳନା ନାମ ଉଚ୍ଚାରି ଭ୍ରମେ,
ହେ ପ୍ରିୟ, ଦିନେ ମତେ ଡାକିଲ ତମେ,
ରୋଷେ ତୁମକୁ କାଞ୍ଚୀ-ସୂତ୍ରେ ବନ୍ଧନ
କଲି ଯା ସେ କଥା କି କର ସ୍ମରଣ ?
ଅବା ଏ କର୍ଣ୍ଣ-ଭୂଷା କମଳ ଧରି,
ପ୍ରହାର କଲି ଯେବେ ମୁଖେ ତୁମରି
ତହୁଁ ପରାଗ ଝରି ତବ ନୟନେ
ଲାଗିଲା ବ୍ୟଥା—ତା କି ପକାଅ ମନେ ?



Digitized by srujanika@gmail.com

– ୯ –

'ଏ ମୋର ହୃଦୟରେ ତୋର ଆସନ'–
ବୋଲି ଯା ଥିଲ କହି ପ୍ରିୟ ବଚନ,
ମଣୁଛି ମିଛ, ତାହା ନୁହଇ ସତ
ମୋ ମନ ତୋଷିବାକୁ ଗୃଢ଼ ନିୟତ ।
ତା ନୋହିଥିଲେ କହ ତୁମେ କିପରି
ତନୁ ବିହୀନ ହେଲ ଆଜି ଏପରି,
ଆଉ କେସନେ ଏହି ରତି ରହିଲା,
ତିଳେ ତ ହେଲେ ତାର କ୍ଷତି ନୋହିଲା ?



Digitized by srujanika@gmail.com

— ୧୦ —

ହେ ନୂଆ-ପରବାସୀ ପରଲୋକର
ଅନୁସରିବି ମୁହିଁ ପଥ ତୁମର,
ମାତ୍ର ନିଠୁର ବିହି କି ଭାବି ମନେ,
ବଞ୍ଚନା କରିଅଛି ସକଳ ଜନେ ।
ହେ କାମଦେବ, ଏହା ସତତ ସତ,
ଦେହୀର ସୁଖ ସବୁ ତୁମ ଆୟତ୍ତ ।



Digitized by srujanika@gmail.com

–୧୧–

ରଜନୀ ତିମିରିତ ନଗରୀ ପଥେ,
ମେଘର ଗରଜନ ଶୁଣି ନିରତେ
ଭୟେ ଚକିତା ଭୀରୁ ପ୍ରିୟାଙ୍କୁ ବଳେ
ଘେନି ଯିବାକୁ ପ୍ରିୟ ନିବାସ ସ୍ଥଳେ,
ତୁମ ବିହୁନେ ଏବେ ହେ କାମଦେବ,
କହତ କିଏ ଆଉ ସମର୍ଥ ହେବ ?



Digitized by srujanika@gmail.com

— ୧୨ —

ମଦ୍ୟପାନେ ଅରୁଣ-ନୟନ ଯୋଷା
ଥରକୁ ଥର ମୁଖୁଁ ଖସଇ ଭାଷା
ତୁମ ବିହୁନେ ଆହା ଯୁବତୀ ଜନେ,
ସେ ମଦ ନିଷ୍ଫଳଟି ଉନ୍ମାଦ ପଣେ ?



Digitized by srujanika@gmail.com

— ୧୩ —

ଶୋଭା ସଦନ ଆହା ତୁମରି ତନୁ,
ହୋଇଲା କଥାର ତ କଥା ଅତନୁ ।
ପରାଣ ସଖା 'ଶଶି' ଯେବେ ଜାଣିବେ
ଉଦୟ ଫଳହୀନ ସିନା ମଣିବେ ।
ଦେଖିବେ ତେଣୁ ଆହା ଦୁଃଖ ମନରେ,
ତନୁ କ୍ଷୀଣତା କୃଷ୍ଣପକ୍ଷ ଅନ୍ତରେ ।



Digitized by srujanika@gmail.com

— ୧୪ —

ହରିତାରୁଣ ରାଗେ ଅତି ମଞ୍ଜୁଳ,
ବୃନ୍ତେ ଶୋଭିତ ନବ ଚୂତ ମୁକୁଳ,
ପୁଂସ କୋକିଳ ମଧୁ କଳ କୂଜନେ
ସୂଚୀତ ହୁଏ ଯାର ବିକାଶ ବନେ,
ସେହି ମୁକୁଳ ଆହା କହତ ତେବେ,
କାହାର ଫୁଲ ବାଣ ହୋଇବ ଏବେ ?



Digitized by srujanika@gmail.com

— ୧୫ —

ଧନୁର ଗୁଣ କରି ଅନେକ ଥର,
ନିଯୋଜି ଥିଲ ଏହି ଅଳି ନିକର,
ଏହି ସେମାନେ ମୋର ଗୁରୁ ଶୋକରେ
ସମବେଦନା ଭରି ସିନା ଅନ୍ତରେ,
ମୋହ ସହିତେ ଗୁଣୁ ଗୁଣୁ ଗୁଞ୍ଜନେ
ବିଳାପ କରନ୍ତି ତ କରୁଣ ସ୍ୱନେ ।



Digitized by srujanika@gmail.com

— ୧୬ —

ସେ ମନୋହର ଦେହ ଆହୁରି ଥରେ
ଲଭି ହେ କାମଦେବ ଉଠ ସତ୍ୱରେ ।
ପ୍ରବୀଣା ପୀକ-ବଧୂ ମଧୁ ଆଳାପେ,
ଚତୁରା ମାନ-ଚୂରା କାମ କଳାପେ,
ସେ କୋକିଳାଙ୍କୁ ଏବେ ଆଦେଶ କର,
ରତି କରମେ ହେବ ଦୂତୀ ନିକର ।



Digitized by srujanika@gmail.com

— ୧୭ —

ମୋ କୋପ ଶାନ୍ତି ଆଶେ ହୋଇ କାରୁଣି
ଶିର ନୁଆଇଁ କର କେତେ ମାଗୁଣି ।
ତିଳେ ହରଷ ହେଲେ କେତେ ସରାଗେ
ରୋମାଞ୍ଚ ରଚି ଏହି ମୋ ତନୁ ଭାଗେ,
ବାହୁ ଯୁଗଳ ଭିଡ଼ ହେ କାମଦେବ,
ମନରୁ ମୋର ସେ କି ପାଶୋର ହେବ?
ତହୁଁ ହୋଇଲେ ରସଘନ ଅନ୍ତର
କେତେ ସୁରତି ତମେ ଗୋପନେ କର-
ସୁମରି ସେ ସବୁକୁ ଆଜି ଏ କ୍ଷଣେ
ତିଳେ ତ ହେଲେ ଶାନ୍ତି ନ ପାଏ ମନେ ।



Digitized by srujanika@gmail.com

— ୧୮ —

ରତି କୁଶଳି ଆହେ, ମନ ମଜାଇ,
ବାସନ୍ତୀ ଫୁଲେ ଥିଲ ମୋତେ ସଜାଇ।
ସେ ଫୁଲ ଦେହେ ଅଛି, ମାତ୍ରକ କାହିଁ
ତୁମ ମୋହନ ରୂପ ଦିଶଇ ନାହିଁ ?



Digitized by srujanika@gmail.com

— ୧୯ —

ଯେ କାଳେ ମୋତେ କେତେ ସ୍ନେହ ସରାଗେ
ବେଶ କରାଉଥିଲ ଅଳତା ରାଗେ,
ତୁମକୁ ସେ ସମୟେ କି ଦୁଃଖେ ପଡ଼ି
ନିଠୁର ଦେବତାଏ ଥିଲେ ସୁମରି,
ତହୁଁ ଚଳିଲ ତୁମେ ହୋଇନି ଶେଷ
ଏ ପଦ ଯୁଗଳର ସେହି ସୁବେଶ ।
ଏବେ ସଅଳ ଆସି ହେ ମୋର ପ୍ରିୟ
ଏ ବାମ ଚରଣରେ ଅଳତା ଦିଅ ।



Digitized by srujanika@gmail.com

— ୨୦ —

ସରଗେ ସୁଚତୁରୀ ସୁର କାମିନୀ
ନେବା ଆଗରୁ ତୁମ ହୃଦୟ କିଣି,
ଅନଳେ ପଶି ଏହି ପ୍ରାଣ ହରାଇ
ଅଙ୍କଶାୟିନୀ ହେବି ପୁଣି ମୁଁ ଯାଇ ।



Digitized by srujanika@gmail.com

— ୨୧ —

କଲେ ବି ତୁମ ପଥ ଅନୁସରଣ,
ତଥାପି ମୋ ଲାଗି ହେ ରତି-ରମଣ,
ଏ ନିନ୍ଦା ଚିରଦିନ ରହିବ ସିନା,
କ୍ଷଣେ ବଞ୍ଚିଲା ରତି ମଦନ ବିନା ।



Digitized by srujanika@gmail.com

–୨୨–

ହେ ପ୍ରିୟ, ପରଲୋକେ କଲ ଗମନ,
ଅନ୍ତିମ କାଳେ ତୁମ ଅଙ୍ଗ ମଣ୍ଡନ
କିପରି କରିବି ହେ, ହେଲା ଏ ଦଶା,
ପ୍ରାଣ ସହିତେ ଦେହ ଗଲା ସହସା ।



Digitized by srujanika@gmail.com

— ୨୩ —

କୁସୁମ-ଧନୁ ରଖି କୋଳେ ତୁମର,
ଫୁଲ ଶରକୁ ଯେବେ ସଲଖ କର,
ସେ କାଳେ ହୃଦ ସଖା ମଧୁ ସହିତେ
ମଧୁ ଆଳାପେ ରତ ଥାଇ ସସ୍ମିତେ,
ଅନାଅ ମୋତେ ଯେଉଁ ଆଡ଼-ନୟନେ,
ଆଜି ସେ ସବୁ ମୋର ପଡ଼ଇ ମନେ।



Digitized by srujanika@gmail.com

— ୨୪ —

କାହିଁ ବା ଗଲେ ମଧୁ ବନ୍ଧୁ-ପ୍ରବର,
ପୁଷ୍ପେ ଯେ ବିରଚନ୍ତି ଧନୁ ତୁମର
ଅବା ସେ ଉଗ୍ର ମହେଶ୍ୱର କୋପରେ
ଲଭିଲେ ପ୍ରିୟ ସଖା ଗତି ଶେଷରେ।



Digitized by srujanika@gmail.com

— ୨୫ —

କରୁଣ ଏ ବିଳାପ ରତ୍ନ -ନାୟକ
ହୃଦୟେ ବାଜେ, ଯେହ୍ନେ ବିଷ ଶାୟକ
ଶୋକେ ଅଧୀରା କାମ-ବଧୂର ପାଶେ,
ହୋଇଲେ ଉଭା ଆଶ୍ୱାସିବାର ଆଶେ ।



Digitized by srujanika@gmail.com

— ୨୬ —

କାମ ସଖାଙ୍କୁ ଦେଖି ସମୀପେ ରତି,
ଉଚ୍ଚ ସ୍ୱରେ ରୋଦନ କରିଲେ ସତୀ,
କର କଣ୍ଢ଼ି ବକ୍ଷେ ଥରକୁ ଥର,
ପୀଡ଼ିତ କଲେ ପୀନ ସ୍ତନ ଯୁଗଳ ।
ଆତ୍ମୀୟଜନ ପାଶେ ଦୁଃଖ ଦୁଆର
ଉଚ୍ଛୁଳି ପଡ଼େ ଠେଲି ହୃଦ-ଦୁଆର ।



Digitized by srujanika@gmail.com

— ୨୭ —

ଦୁଃଖ ଭରା ଅନ୍ତରେ କହିଲେ ରତି,
ଦେଖ ବସନ୍ତ ତୁମ ସଖାର ଗତି ।
ଭସ୍ମରେ ପରିଣତ ସେ ଗୁରୁ ଅଙ୍ଗ-
କପୋତ ପର ପରି ଦିଶଇ ରଙ୍ଗ ।
ସେ ଭସ୍ମ କଣିକା ବା ରହୁଛି କାହିଁ
ପବନ ଦୂରେ ତାକୁ ନିଏ ଉଡ଼ାଇ ।



Digitized by srujanika@gmail.com

— ୨୮ —

ରତି-ପତି ହେ ଏବେ ଦିଅ ଦର୍ଶନ,
ସେ ଲାଗି ଚନ୍ଦ୍ରରାଜ ଆଜି ଉଚ୍ଛନ୍ନ ।
ପୁରୁଷ ପ୍ରୀତି ପତ୍ନୀଠାରେ ଅଚିର ;
ମାତ୍ର ତା ବନ୍ଧୁ ପାଶେ ନୁହେଁକି ଚିର ?



Digitized by srujanika@gmail.com

— ୨୯ —

ମୃଣାଳ  ନାଳେ  ତୁମ  ଗୁଣ  ବିରଚି,
କୋମଳ  କୁସୁମେ ଗୋ ବିଶିଖ ଖଚି,
ତୁମରି  ସେହି  ଗୂଢ଼ କୁସୁମ ଚାପେ ,
ସୁର-ଅସୁର ବଶ କର ତ  ଆପେ ।
ଏ କାମେ ପାଅ ତମେ ଯାହାର ସାହା,
ସେହି ସେ ସଖା ତୁମ ପାରୁଶେ ଆହା ।



Digitized by srujanika@gmail.com

— ୩୦ —

ବାହୁଡ଼ିବେ ନାହିଁଟି ସଖା ତୁମରି,
ପବନେ ପ୍ରତିହତ ପ୍ରଦୀପ ପରି
ମୁଁ ରହିଗଲି ଦଗ୍‌ଧ ସଳିତା ସମ,
ଅନ୍ତରେ ବହି ଖାଲି ବ୍ୟଥାର ଧୂମ ।



Digitized by srujanika@gmail.com

— ୩୧ —

ଜୀବନେ ଥାଉଁ ରତି, କାମ-ନିଧନ
ଅପୂର୍ଣ୍ଣ ହେଲା ସିନା ବିଧି ସାଧନ ।
ବାଧାବିହୀନ ଭାବି ସେ ଯେଉଁ ବୃକ୍ଷେ
ଆଶ୍ରୟ୍ ନେଇଥାଏ ଲତିକା ସୁଖେ,
ଭାଙ୍ଗଇ ଯେବେ ସେହି ତରୁକୁ କରୀ
ଲୋଟଇ ଧରା ବୁକେ ସିନା ବଲ୍ଲରୀ ।



Digitized by srujanika@gmail.com

— ୩୨ —

ବସନ୍ତ, କର ଏଣୁ ବନ୍ଧୁ କରମ,
ଜଳେ ବିରହାନଳେ ମୋର ମରମ ।
ଅରପି ଚିତାନଳେ ଏ ମୋର ଦିହ
ପତି ପାରୁଶେ ମତେ ପଠାଇ ଦିଅ ।



Digitized by srujanika@gmail.com

— ୩୩ —

ଗନ୍ଧ ସହିତ ଲୁଚି ଯାଏ ଗନ୍ଧିନୀ,
ବିଲୀନ ହୁଏ ମେଘ ସହ ଦାମିନୀ
ଅଚେତନେ ତ ଅଛି ଏମନ ଗତି,
ପତିର ପଥ ଅନୁସରଇ ସତୀ ।



Digitized by srujanika@gmail.com

— ୩୪ —

ଭୂତଳୁ ପଡି ଦେହ ପାଉଁଶ ଘେନି
ରଞ୍ଜିତ କରିବି ଏ ଉରଜ ବେନି,
ନବୀନ କିଶଳୟ୍ ତଳପ ସମ,
ଚିତା-ତଳପେ ତନୁ ନିହିବି ମମ ।



Digitized by srujanika@gmail.com



— ୩୪ —

ନାନା କୁସୁମେ କେଳି ଶେଯ ସଜାଇ
ସୁରତ କାଳେ ସଖୀ ସୁଖେ ମଜାଇ
ସହାୟ ହୋଇଛୁ ତ ଅନେକ ଥର,
ଏବେ ମୋ ଚିତା-ଶେଯ ରଚନା କର।
ବସନ୍ତ ଘେନ ମୋର ଏହି ମିନତି,
ଅଞ୍ଜଳି ପୁଟେ ମୁଁ ଗୋ ବିହେ ପ୍ରଣତି।





Digitized by srujanika@gmail.com

— ୩୬ —

ତନୁରେ ସଖୀ ମୋର ଦିଅ ଅନଳ,
ମଳୟୁ ବୁହାଇ ଗୋ ଜାଳ ଚନ୍ଦନ ।
ଜାଣ ତ ଏହା ତୁମ୍ଭେ ସ୍ମର-ଦୋସର
ତିଳେ ନୁହନ୍ତି ସୁଖୀ ମୋ ବିନା ସ୍ମର ।



Digitized by srujanika@gmail.com

— ୩୭ —

ସରିବ ଯେବେ ଏହି କର୍ମ ନିଚୟ

ସଲିଳ ଅଞ୍ଜଳିଏ ଦେବ ନିଶ୍ଚୟ ।

ମୋ ଠାରୁ ଭିନ୍ନ ନୋହି ମୋହ ସଙ୍ଗରେ

ପାଇବେ ତୁମ ସଖା ପରଲୋକରେ ।



Digitized by srujanika@gmail.com

— ୩୮ —

ଆଉ ଶେଷରେ ପିଣ୍ଡଦାନ କରମେ

ସ୍ମର ସକାଶେ ଦେବ, ଘେନ ମରମେ,

ବିଲୋଳ କିଶଳୟ ଚୂତ ବଲ୍ଲରୀ,

ପାଆନ୍ତି ସୁଖ ତହିଁ ସଖା ତୁମରି ।



Digitized by srujanika@gmail.com

— ୬୯ —

ଘୋର ନିଦାଘ କାଳେ ଶୁଷ୍କ ସରରେ,
ଜଳବିନା ମରଣମୁଖୀ ମୀନରେ,
ଭରସା ଦିଏ ଯେହ୍ନେ ଆଦ୍ୟ ବରଷା,
ତେସନେ ଅଶରୀରୀ ବାଣୀ ସହସା,
ଆଶ୍ୱାସ ଦେଲା କାମ-କାମିନୀ ମନେ,
ଅଟଳ ଥିଲା ଯେହ୍ନୁ ମରଣ ପଣେ ।



Digitized by srujanika@gmail.com

—୪୦—

ହେ କାମ-ପ୍ରିୟା ତବ ହୃଦ-ବଲ୍ଲଭ,
ହୋଇବେ ନାହିଁ ଚିରଦିନ ଦୁର୍ଲ୍ଲଭ ।
ଶୁଣ, କାହିଁକି ସେହୁ ପତଙ୍ଗ ଦଶା,
ଲଭିଲେ ହର ନେତ୍ରାନଳେ ସହସା ।



Digitized by srujanika@gmail.com

—୪୧—

ଦିନେ ଗୋ ପ୍ରଜାପତି ଚିତ୍ତ ବିକାରେ,
କାମ ଆସକ୍ତ ହେଲେ ଦୁହିତାଠାରେ ।
କିନ୍ତୁ ବିକାର ବୋଧି ବିଧି ତତ୍‌କ୍ଷଣେ
ବିହିଲେ ଅଭିଶାପ ରୋଷେ ମଦନେ ।
କଲେ ସେ ଯେଣୁ ତାଙ୍କ ଚିତ୍ତ ଚଞ୍ଚଳ,
ଭୁଞ୍ଜିଲେ ଏବେ କାମ ସ୍ୱକର୍ମ ଫଳ ।



Digitized by srujanika@gmail.com

—୪୨-୪୩—

ଗଉରୀ ତପେ ହର ପ୍ରସନ୍ନ ଚିତ୍ତ
ବରିବେ ପ୍ରଣୟିନୀ ରୂପେ ତ୍ବରିତ,
ସେ କାଳେ କାମ ସୁଖ ଲଭିବା ପାଇଁ
କନ୍ଦର୍ପରେ ସେ ହେଲେ ଦେବେ ବଞ୍ଚାଇ।
ଧର୍ମଙ୍କ ମିନତିରେ ଚତୁରାନନ
କହିଲେ ଏହି ଶାପ ମୁକ୍ତି ବଚନ।
ପବି ପୀୟୂଷ ବେନି ଥାଏ ମେଘରେ,
କୋପ ପ୍ରସାଦ ବେନି ଯୋଗୀ ହୃଦରେ।



Digitized by srujanika@gmail.com

—୪୪—

ତେଣୁ ଭବିଷ୍ୟେ ପ୍ରିୟ ମିଳନ ଲାଗି,
ଏ ତନୁ ସଯତନେ ରଖ ଶୋଭାଙ୍ଗୀ ।
ରବି କିରଣେ କ୍ଷୀଣ ନଦୀର ଜଳ,
ବରଷା କାଳେ ଯେହ୍ନେ ହୁଏ ପ୍ରବଳ ।



Digitized by srujanika@gmail.com

—୪୫—

ଏ ରୂପେ କାମ-ବଧୂ ମରଣ ପଣ,
କେଉଁ ଅଦୃଶ୍ୟ ଦେବ କଲେ ବାରଣ।
ମଦନ-ହୃଦ-ସଖା ଋତୁରାଜନ
ପରତେ ଯାଇ ସେହି ଦେବ ବଚନ,
ଯୁକତିଭରା ନାନା ବୋଧ ବଚନେ,
ଆଶ୍ୱାସ ଦେଲେ କାମ-ବାନ୍ଧବୀ ମନେ।



Digitized by srujanika@gmail.com

— ୪୬ —

ଦିବସେ ମ୍ଳାନ ଚନ୍ଦ୍ରକଳା ଯେପରି,
ରହଇ ଦିନାନ୍ତକୁ ଅପେକ୍ଷା କରି,
ତେସନ କାମ-ବଧୂ ଦୁଃଖେ ବିବଶା
ଗଣିଲେ ଦିନ, କେବେ ଯିବ ଏ ଦଶା ।



Digitized by srujanika@gmail.com



''ଅଚେତନେ ତ ଅଛି ଏସନ ଗତି,
ପତିର ପଥ ଅନୁସରଇ ସତୀ''



''ମୁଁ ରହିଗଲି ଦଗ୍ଧ ସଳିତା ସମ,
ଅନ୍ତରେ ବହି ଖାଲି ବ୍ୟଥାର ଧୂମ''

Digitized by srujanika@gmail.com

